ନବୀନ କୁମାର ପରିଡ଼ାଙ୍କ

# ଡଷ୍ଟବିନ୍

## ଓ ଅନ୍ୟାନ୍ୟ ନାଟକ





ଜୟଗୁରୁ

# ଡଷ୍ଟବିନ୍

# ଓ

# ଅନ୍ୟାନ୍ୟ ନାଟକ

ନବୀନ କୁମାର ପରିଡ଼ା
ପ୍ରାକ୍ତନ ଅଧ୍ୟକ୍ଷ, ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ
ଭୁବନେଶ୍ୱର

ଡଷ୍ଟବିନ ଓ ଅନ୍ୟାନ୍ୟ ନାଟକ

ଲେଖକ : ନବୀନ କୁମାର ପରିଡ଼ା

ପ୍ରଥମ ସଂସ୍କରଣ : କାର୍ତ୍ତିକ ପୂର୍ଣ୍ଣିମା ୨୦୧୭

ପ୍ରକାଶକ : ଅନ୍ନପୂର୍ଣ୍ଣା ପରିଡ଼ା
ଜିତ୍ ପ୍ରକାଶନ୍, ବି-୬/୧୦, ଇନ୍ଦିରା ହାଉସିଂ କଲୋନି
ପୋ: ଶିଶୁପାଳଗଡ଼, ଭୁବନେଶ୍ୱର-୭୫୧୦୦୨

ମୁଦ୍ରଣ : ଦିବ୍ୟ ମୁଦ୍ରଣୀ
ସାମନ୍ତରାୟପୁର, ଭୁବନେଶ୍ୱର

ମୂଲ୍ୟ : ₹ ୧୮୦ /-

Dustbin O Anyanya Nataka

Writer: Nabin Kumar Parida

First Edition: Kartika Purnima-2017

Publisher: **Annapurna Parida**
Jeet Prakashan, B-6/10, Indira Housing Colony
P.O.: Sisupalgarh, Bhubaneswar-751002

Printed at: **Divya Mudrani**
Samantarapur, Bhubaneswar

Price: ₹ 180 /-

## ନାଟକ ସମ୍ପର୍କରେ ପଦେ

(ଡଷ୍ଟବିନ୍ ଓ ଅନ୍ୟାନ୍ୟ ନାଟକ)

ପ୍ରାୟତଃ ତିନି ପ୍ରକାରର ଅନୁଭୂତି ନେଇ ମୁଁ ନାଟକ ଲେଖିଛି । ପ୍ରଥମତଃ ବରାଦି ନାଟକ... । ଅନ୍ୟର ଅନୁରୋଧରେ, ଅନ୍ୟର ଇଚ୍ଛା ଅନୁସାରେ ନାଟକ ଲେଖାକୁ ମୁଁ ବରାଦି ନାଟକ ବୋଲି ଅଭିହିତ କରୁଛି, ଯାହା ମୋ ପାଇଁ ଯମ ଯନ୍ତ୍ରଣା ଠାରୁ କିଛି କମ୍ ନୁହେଁ ।

ଦ୍ୱିତୀୟତଃ ନିଜ ଇଚ୍ଛାରେ ଅନ୍ୟ କାହାଣୀକୁ ନେଇ ନାଟକୀୟ ରୂପାନ୍ତରଣ କରିବାର ପ୍ରୟାସ । ଏହା ମଧ୍ୟ କିଛି କମ୍ କଷ୍ଟସାଧ୍ୟ ନୁହେଁ । କାରଣ, କାହାଣୀର ମର୍ମ ଓ ଉଦ୍ଦେଶ୍ୟକୁ ସମ୍ମାନ ଦେଇ ନାଟକରେ କାହାଣୀର ଉତ୍କର୍ଷତା ପ୍ରତିପାଦନ କରିବା ବେଶ୍ କଷ୍ଟସାଧ୍ୟ ବୋଲି ମୁଁ ଉପଲବ୍ଧି କରିଛି ।

ତୃତୀୟତଃ ନିଜ ମନକୁ ଛୁଇଁ ଯାଉଥିବା ସ୍ୱାଭାବିକ ଚେତନାର ସ୍ଫୁରଣରେ ରୂପାୟିତ ନାଟକ ମୋ ପାଇଁ ଅଧିକ ସାବଲୀଳ, ମର୍ମସ୍ପର୍ଶୀ ଓ ପ୍ରଗଳ୍ଭ ବୋଲି ମୋର ମନେହୁଏ । ଉକ୍ତ ପୁସ୍ତକରେ ତିନୋଟି ଧାରାର ସମନ୍ୱୟ ଘଟି ୫ଟି ନାଟକ ପ୍ରସ୍ତୁତ ହୋଇଛି ।

ଯାହା ମୋର ପିତୃପିତାମହ ଓ ମାତୃ ମାତାମହୀଙ୍କ ଉଦ୍ଦେଶ୍ୟରେ ସମର୍ପଣ କରି ନିଜକୁ ଧନ୍ୟ ମନେ କରୁଛି ।

ସାରା ଓଡ଼ିଶାରେ ନାଟକଗୁଡ଼ିକର ସଫଳ ରୂପାୟନ ହୋଇପାରିଲେ ଧନ୍ୟ ମନେ କରିବି ।

ଇତି

**ନବୀନ କୁମାର ପରିଡ଼ା**

ସୂଚୀପତ୍ର

# ଇତି ଯେବେ ହସେ

ଶ୍ରୀଯୁକ୍ତ ଲଳାଟେନ୍ଦୁ ଦାସ ମହାପାତ୍ରଙ୍କ ଗବେଷଣାତ୍ମକ ନିବନ୍ଧକୁ ନେଇ ଶ୍ରୀଯୁକ୍ତ ଭୂପେନ ମହାପାତ୍ରଙ୍କ ଗଳ୍ପ 'ସମ୍ଭବାମୀ' ଉପରେ ଆଧାରିତ ନାଟକ 'ଇତି ଯେବେ ହସେ'। ୧୬୭୪ ମସିହାରେ ବାଲେଶ୍ୱରର ସାହାବନ୍ଦର ପୃଷ୍ଠଭୂମି ଉପରେ ଗଢ଼ି ଉଠିଥିବା କାହାଣୀ ହିଁ ନାଟକର କାହାଣୀ; କିଛି ଚରିତ୍ର ଓ ଘଟଣା ସତ୍ୟ ହୋଇଥିଲେ ମଧ୍ୟ ନାଟକୀୟ ପରିବେଶ ସୃଷ୍ଟି କରିବା ପାଇଁ କଳ୍ପନାର ଆଶ୍ରୟ ନେବାକୁ ପଡ଼ିଛି। ବର୍ତ୍ତମାନର ପୃଷ୍ଠଭୂମିରେ ନାଟକଟି ଯୁକ୍ତିଯୁକ୍ତ ଏବଂ ସୁଦୃଶ୍ୟ ହୋଇପାରିଛି ବୋଲି କହିବାକୁ ହେବ।

ଏହାର ପ୍ରଥମ ମଞ୍ଚାୟନ ମୋରି ନିର୍ଦ୍ଦେଶନାରେ ରବୀନ୍ଦ୍ର ମଣ୍ଡପରେ ସଚିବାଳୟର ମିଳିତ ସାଂସ୍କୃତିକ ପରିଷଦ, ଭୁବନେଶ୍ୱର ଦ୍ୱାରା ଅଭିନୀତ ହୋଇ ସଫଳତା ପାଇବା ପରେ ଦ୍ୱିତୀୟ ମଞ୍ଚାୟନ ପ୍ରତିଧ୍ୱନୀ ନାଟ୍ୟସଂସ୍ଥା, ରାଉରକେଲା ଦ୍ୱାରା ଆୟୋଜିତ ଓଡ଼ିଶା ସଂଗୀତ ନାଟକ ଏକାଡେମୀ ଆନୁକୂଲ୍ୟରେ ଶିଶୁ ନାଟକ କର୍ମଶାଳା ଦ୍ୱାରା ସିଭିକ୍ ସେଣ୍ଟର ରାଉରକେଲାରେ ଦର୍ଶକଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇପାରିଥିଲା।

---

## ପାତ୍ର ପରିଚୟ

ବାବୁ

ମା'

ଦୀନବନ୍ଧୁ ମାଳି

ବିକ୍ରମ

କୋରସ୍ ମାଝି, ଦୂତ

ତଅପୋଇ

କ୍ଷେମଚାନ୍ଦ

ଘରମଣି

ସୁବେଦାର

ପହରାଦାର ୧

ପହରାଦାର ୨

ନାଟକଟି କୋରସ ପ୍ରଧାନ ହୋଇଥିବାରୁ କୋରସମାନେ ମଧ୍ୟ ବିଭିନ୍ନ ଚରିତ୍ରରେ ଅଭିନୟ କରିପାରିବେ।

ନାଟକଟିରେ ସଂଗୀତମୟତା ଓ Chorusର ପ୍ରାଧାନ୍ୟ ଥିବାରୁ ଏହାର ଦୃଶ୍ୟ ସଜ୍ଜାକୁ ସରଳ ଓ ନମନୀୟ କରିବାର ଆବଶ୍ୟକତା ରହିଛି । ତେଣୁ ମୁଁ ଏହି ନାଟକର ଅଦ୍ୟାବଧି ପ୍ରାୟ ତିନୋଟି ପ୍ରଯୋଜନା କାଳରେ ମଞ୍ଚ ସଜ୍ଜାକୁ ଉପରୁ ଝୁଲାଇ ରଖିବାର ବ୍ୟବସ୍ଥା କରିଛି, ଯେମିତି ପ୍ରୟୋଜନ କାଳରେ ତାହା ଉପରକୁ ଉଠିଯାଇପାରିବ । Stageର Centre left ରେ ମୋଗଲ ସିପାହୀଙ୍କର ତମ୍ବୁ (ଯାହା କନା ଓ ବାଉଁଶ ପାତିଆରେ ତିଆରି) Stageର Center Rightରେ ବାବୁଙ୍କ ଘର ଯାହାର ଦୁଆର ବନ୍ଧ ସେମିତି ବାଉଁଶ ଗୁଣା ଓ କପଡ଼ା (ଲୁଗା)ରେ ତିଆରି । ମଞ୍ଚର ପଛ ଭାଗ କଳା ପରଦା କିମ୍ବା ପ୍ରୟୋଜନ କ୍ଷେତ୍ରରେ ଧଳା ପରଦା ବ୍ୟବହାର କରି, Projector କିମ୍ବା ଛାୟା ମାଧମକୁ ବ୍ୟବହାର କରି ଦୃଶ୍ୟ ଦେଖାଯାଇପାରିବ। ନାଟକ ଆରମ୍ଭରେ ଦେଖାଗଲା Center Rightରେ ବାବୁଙ୍କର ଘର । ବାହାରୁ ମାଳୀ ପ୍ରବେଶ କଲା ଓ ବାବୁଆଣୀଙ୍କୁ ଡାକ ପକାଇଲା ।

## ପ୍ରଥମ ଦୃଶ୍ୟ

ମାଳୀ — ମାଆ – ମାଆ

ମାଆ — କ'ଣ ହେଲା ?

ମାଳୀ — ମାଆ, ମୁଁ ଟିକେ ଗାଁକୁ ଯାଇଥାନ୍ତି ।

ମାଆ — ହଇରେ ତୁ ପରା ଏବେ ଗାଁକୁ ଯାଇଥିଲୁ ।

ମାଳୀ — ନାଇଁ କଥା କ'ଣ କି ମାଆ! ଆମ ଗାଁରେ ଦୋଳ ମେଳନ । ମୁଁ ମାନସିକ କରିଥିଲି । ଠାକୁର ଆମ ଦୁଆରେ ଭୋଗ ଖାଇବେ । ମନା କରନି ମାଆ, ମୁଁ ଦି' ଦିନ ରହି ପଳେଇ ଆସିବି ।

ମାଆ — ହଉ ଯାଆ, ହେଲେ ବାବୁଙ୍କୁ କହି ଦେଇ ଯିବୁ ।

ମାଳୀ — ଆସୁଛି ମାଆ, ଜୁହାର ।

## ଦ୍ୱିତୀୟ ଦୃଶ୍ୟ

(ନାଚି ନାଚି ଦୋଳ ବିମାନର ଶୋଭାଯାତ୍ରା ନେଇ ଯୁବକମାନେ ଗୀତ ଗାଇ ଚାଲିଛନ୍ତି।)

ଦୋଳବିମାନ (ମହାମନ୍ତ୍ର) — ହରେ କୃଷ୍ଣ ହରେ କୃଷ୍ଣ, କୃଷ୍ଣ କୃଷ୍ଣ ହରେ ହରେ<br>
ହରେ ରାମ ହରେ ରାମ, ରାମ ରାମ ହରେ ହରେ ।

ଦୋଳଗୀତ — ଅଙ୍ଗେ ଅଙ୍ଗେ ଆଜି କି ରଙ୍ଗ ଲାଗିଛି<br>
ଦୋଳିରେ ଦୋଳ ଗୋବିନ୍ଦ...।<br>
କି ସୁନ୍ଦର ଆହା କି ଆନନ୍ଦମୟ<br>
ରାଇ ସଙ୍ଗେ ଜଗଦୀଶ...।<br>
ବାଇ ଖୋଳ ତାଳ, ବାଇ ଖୋଳ ତାଳ<br>
ନାଚନ୍ତି ସରବେ ହୋଇ ମେଳ ।

## ତୃତୀୟ ଦୃଶ୍ୟ

(ମେଳାର ଦୃଶ୍ୟ। କିଛି ଲୋକ ବିକ୍ରୀ କରିବେ । ଆଉ କିଛି ଲୋକ କିଣାକିଣି କରିବେ ।)

କୋରସ୍-୧ ଆସ ହୋ ଆସ, ଆସ ହୋ ଆସ
କୋ-୨ ଆସ କିଏ ଖାଇବ ହୋ ଆମ ଓଡ଼ିଶାର ଓଡ଼ିଆ ଖାନା, (୨)
ବାରିପଦାର ଗରମ ମୁଢ଼ି,
ମାଉଁସ ଝୋଳକୁ ପିଆଜକଲି
କୋ-୩ ବାଲେଶ୍ୱରିଆଙ୍କ ଚାଉଳଭଜା,
ଖାଇବ ମିଶାଇ ପାଚି ନଡ଼ିଆ,
କୋ-୪ ଭଦ୍ରକର ପାଳୁଅ ଲଡୁକୁ
ତା' ସାଙ୍ଗେ ମାଡୁଆ ଚଣା...।
ଆସ କିଏ ଖାଇବ ହୋ...(କୋରସ୍ ଘୁରିବେ)
କୋ-୫ ସାଲେପୁରର ରସଗୋଲା
ଆଉ ଢେଙ୍କାନାଳର ବରା
କୋ-୧ ନୟାଗଡ଼ର ଛେନାପୋଡ଼ ପୁଣି
ଭୁବନେଶ୍ୱର ଖଇ କୋରା
କୋ-୨ କଟକର ବାରମଜା ସାଙ୍ଗେ
ଆଳୁଦମ ଦହିବରା...।
ଆସ କିଏ ଖାଇବ ହୋ...(କୋରସ୍ ଘୁରିବେ)
କୋ-୩ ଚନ୍ଦନପୁରର ମାଲପୁଆ ସାଙ୍ଗେ
ବାଡ଼ୁଆ ଡାଲମା ଖାଅ
କୋ-୪ ପୁରୀ ଚୁଡ଼ା କଦମା ବାଟେଳି ଖାଇ,
ଛେନା ପଣା ଟିକେ ପିଅ
କୋ-୫ ସବୁଖାଇ ସାରି ମନ ନ ଭରିଲେ
ଆନନ୍ଦ ବଜାରେ ଯାଅ...।
ଆସ କିଏ ଖାଇବ ହୋ...(କୋରସ୍ ଘୁରିବେ)
କୋ-୧ କେନ୍ଦ୍ରାପଡ଼ାର ରସାବଳୀ ଆଉ
ନିମାପଡ଼ା ଝିଲି ଖାଅ
କୋ-୨ ଶ୍ରୀଜଗନ୍ନାଥଙ୍କ ଛପନ ଭୋଗ
ଅବଢ଼ା ଅନ୍ନ ପାଅ
କୋ-୩ ଶେଷରେ ଯେବେ ତଣ୍ଟି ସୁଖିଯିବ
ଟଙ୍କ ତୋରାଣି ପିଅ...।
କୋ-୪ ଆସ କିଏ ଖାଇବ ହୋ...(କୋରସ୍ ଘୁରିବେ)

(ଦେଖାଗଲା ସମସ୍ତେ ଖାଇପିଇ ଦେଇ ପଳେଇ ଗଲେ)
ଦେଖ ହୋ ଭାଇ ଦେଖ...

କୋ-୧ ଖାଇପିଇ ଦେଇଗଲେ ପଳେଇ,

କୋ-୨ ପତର ଦୋନାକୁ ଫୋପାଡ଼ି ଦେଇ

କୋ-୩ ଆସରେ ଭାଇ ଆସ ହାତରେ ଧରି ଝାଡ଼ୁ କୋଦାଳ

କୋ-୪ ଅରମା ସଫା କର ।

ସମସ୍ତେ ଅରମା ସଫା କରରେ ଭାଇ ଅରମା ସଫା କର।
(ଝାଡ଼ୁ ଧରି ୬ ଜଣ ବାହାରିବେ)

ସମସ୍ତେ ହେିସାରେ ହେିସା, ଜୋର ଲଗାକେ ହେିସା

କୋ-୫ ରାସ୍ତାଘାଟ ହେଲେ ଅଳିଆ ଜମା,

କୋ-୧ ବଢ଼ିବ ଦୁର୍ଗନ୍ଧ ହେବ ନର୍ଦ୍ଦମା

କୋ-୨ ପରିବେଶ ହେବ ଅସ୍ୱାସ୍ଥ୍ୟକର

କୋ-୩ ସଫେଇ କରରେ ସଫେଇ କର

ସମସ୍ତେ ହେିସାରେ ହେିସା, ହେିସାରେ ହେିସା, ଜୋର୍ ଲଗାକେ ହେିସା ।
(କୋରସ୍ ବାହାରିବେ)

## ଚତୁର୍ଥ ଦୃଶ୍ୟ

(ବାବୁଙ୍କ ଘରର ଦୃଶ୍ୟ। ଦେଖାଗଲା ପୁଅ ବିକ୍ରମ କାନ୍ଥରେ ଗୋଟିଏ ପୁରୁଣା ଛବିକୁ ଲଗାଇ ତାକୁ ରାଗରେ ଟେକା ଫୋପାଡ଼ୁଛି ।)

ବିକ୍ରମ ଆଜି ତୋ' ମୁଣ୍ଡ ନଫଟାଇ ମୁଁ ଛାଡ଼ିବି ନାହିଁ ।

ମାଆ ଆରେ ଏସବୁ କ'ଣ ଚାଲିଛି ଶୁଣେ ? ସ୍କୁଲରୁ ଆସିଲାବେଳରୁ ସେଇଠି କ'ଣ ଗୋଟାଏ ଛବିକୁ ଟଙ୍ଗେଇ ଟେକା ପକେଇ ଚାଲିଛୁ ? ଖାଇବାକୁ ଡାକି ଡାକି ମୁଁ ଥକି ଗଲିଣି, ଖାଇବୁ ଆ ।

ବିକ୍ରମ ନାଁ, ମୁଁ ଖାଇବି ନାହିଁ । ଆଗ ତା' ମୁଣ୍ଡ ଫଟେଇ ସାରେ ତା'ପରେ ଖାଇବି ।

ମାଆ ତୋ' ମୁଣ୍ଡରେ ଭୂତ ପଶିଛି ନା କ'ଣ ? ଆରେ ସେଇଟା କାହା ଫଟୋ ? ତୁ କହିଁକି ତା' ଉପରକୁ ଟେକା ପକାଉଛୁ ? ଖାଇବୁ ଆ ।

ବିକ୍ରମ କହିଲି ପରା ମୁଁ ଖାଇବି ନାହିଁ । ତୁ ଯା ପଳା । ମତେ ରଗାନା କହୁଛି, ନ ହେଲେ ଏଇ ଟେକା ମାରି ତୋ' ମୁଣ୍ଡ ବି ଫଟେଇ ଦେବି ।

ମାଆ ବାପ୍‌ରେ ବାପ୍ । କି ଜିଦ୍‌ଖୋର୍ ପିଲା କେଜାଣି । ଆରେ ସେଇଟା ଫଟୋ । ସିଏ କୋଉ ମଣିଷ ନୁହେଁ ଯେ ତା' ମୁଣ୍ଡ ଫଟେଇ ଦେବୁ ।

ବିକ୍ରମ ମୁଁ ଜାଣେ ସେଇଟା ଫଟୋ । ଅଥଚ ମୁଁ ତା' ମୁଣ୍ଡ ଫଟେଇବି, କାରଣ ସେ ବଞ୍ଚି ନାହିଁ । ବଞ୍ଚି ଥିଲେ ମୁଁ ତ' ତାକୁ ଗୁଳି କରିଥାନ୍ତି । ଆଉ କାହିଁକି ତା' ମୁଣ୍ଡ ଫଟେଇବି ସେ କଥା ମୁଁ ତୋତେ ବୁଝେଇ ପାରିବିନି କି ତୁ ବୁଝିପାରିବୁନି ।

ମାଆ ଠିକ୍ ଅଛି ଆଜି ତା'ହେଲେ ତୋ' ବାପା ଆସନ୍ତୁ, ତାଙ୍କୁ ବୁଝେଇବୁ । ମୋ' ଧନଟା ପରା, ଚାଲ୍ ଖାଇବୁ ଚାଲ୍ ।

ବିକ୍ରମ କହିଲି ପରା ଏବେ ଖାଇବି ନାହିଁ । ବାପା ଆସନ୍ତୁ, ତା'ପରେ ଖାଇବି ।

(ଦେଖାଗଲା ବାବୁ ଘରକୁ ଆସୁଛନ୍ତି)

(ଦି'ପଟୁ କୋରସ୍ ବାହାରିବେ । ତା' ପଛରେ ବାବୁ ଆସିବେ)

(ଗୀତ) ସମସ୍ତେ : ବାବୁ ଆସୁଛନ୍ତି, ବାବୁ ଆସୁଛନ୍ତି,
ବାବୁ ଆସୁଛନ୍ତି ଘରକୁ

କୋ-୧ ଅଫିସର ସିଏ ବଡ଼ ହାକିମ,
ଦପ୍ତରରେ ତାଙ୍କ ଭାରି ସୁନାମ,

କୋ-୨ ଗଛ ହଲେ ନାହିଁ ପତ୍ର ହଲେ ନାହିଁ,
ଆନ କରିବକେ ତାଙ୍କ ହୁକୁମ,

କୋ-୩ ଘରର ଘରଣୀ ମାଲିକିଆଣି ସେ ସାଆନ୍ତିଆଣି,
ମିଜାଜ ତାଙ୍କର କିଏ ନ ଜାଣି,

କୋ-୪ କଥାରେ କଥାରେ ତାଗିଦ କରନ୍ତି,
ଭୟେ ଚପରାଶି ପ୍ରସାଦ ଗଣି,

କୋ-୫ ଏକୋଇର ବିଳା ବିଶିକେଶନ,
ପାଠରେ ପଢ଼ାରେ ତାଙ୍କର ମନ,

କୋ-୧ ମାଷ୍ଟର କହନ୍ତି ଭାରି ଭଲ ଚାଟ,
ମଣିଷ ପଣିଆ ତାଠୁଁ ଉତ୍ତମ

ମାଆ ଆଜି ଏହାର ମୁଣ୍ଡ କିଏ ବି ଗାଡ଼ି ଦେଇଛି କେଜାଣି ?

ବାବୁ କ'ଣ ହେଲା ? କ'ଣ ଚାଲିଛି ଏସବୁ ? ଏତେ ପାଟି କରୁଛ କାହିଁକି ?

ମାଆ ଦେଖୁନ, ସ୍କୁଲରୁ ଆସିଲା ବେଳଠୁଁ ଖାଇବା ପିଇବା ନାହିଁ କି ପାଠ ଶାଠ ନାହିଁ । ସେଇ ଫଟୋଟାକୁ ଟାଙ୍ଗି ସେତେବେଳୁ ତା' ଉପରକୁ ଟେକା ପକେଇ ଚାଲିଛି ।

ବାବୁ କାହିଁକି ?

ମାଆ କେଜାଣି, ତାକୁ ପଚାରୁନ ?

ବାବୁ ବିକ୍ରମ, ଶୁଣିଲୁ (ପାଖେଇ ଆସିଲା ବିକ୍ରମ)

ବିକ୍ରମ କ'ଣ ?

ବାବୁ ତାକୁ ଟେକା ପକାଉଛୁ କାହିଁକି ?

ବିକ୍ରମ ତା' ମୁଣ୍ଡ ଫଟେଇବି ।

ବାବୁ (ହସି) ଆରେ ସେ କିଏ ? ସେ କ'ଣ ଦୋଷ କରିଛି ଶୁଣେ ?

ବିକ୍ରମ ତୁମେ ତାକୁ ଚିହ୍ନିପାରୁନ ?

ବାବୁ (ଫୋଟୋ ଦେଖି) ନା ତ...ତୁ କହିଲୁ ସେ କିଏ ?

ବିକ୍ରମ ସ୍କୁଲରେ ପାଠ ପଢ଼ିଲାବେଳେ କ'ଣ ଇତିହାସ ପଢ଼ିନ ? ଢାକାର ନବାବ୍ ଶାୟସ୍ତାଖାଁର ଉତ୍କଳ ସୁବେଦାର ରସିଦ ଖାଁର ଫଟୋ ଏଇଟା ।

ବାବୁ (ହସି) ପାଇଲୁ କୋଉଠୁ ? କ'ଣ ତୋ ଇତିହାସ ବହିରୁ ଚିରି ଆଣିଛୁ ?

ବିକ୍ରମ ଇଚ୍ଛା ତ' ହେଉଥିଲା ତା' ଫଟୋ ସହ ସେଇ ପୃଷ୍ଠାକୁ ମଧ ଚିରି ଟିକି ଟିକି କରି ଦେଇଥାନ୍ତି । ଖାଲି ପାଠପଢ଼ା ବହି ବୋଲି ଚିରିଲି ନାହିଁ । ଜେରକ୍ସ କରିଆଣି ଏଇଠି ଝୁଲେଇ ଦେଇଛି ଆଉ ଟେକା ମାରୁଛି ।

ବାବୁ ତା' ମୁଣ୍ଡ ଫଟେଇବୁ ନୁହେଁ ? ଏମିତି କଲେ କ'ଣ ମୁଣ୍ଡ ଫାଟିବ ? ଟେକା ମାରି ମାରି ତୋ' ହାତ ଥକି ପଡ଼ିବ ।

ବିକ୍ରମ ତା' ମୁଣ୍ଡ ଫାଟୁକି ନଫାଟୁ, ମୁଁ କିନ୍ତୁ ଆଜି ତାକୁ ଛାଡ଼ିବି ନାହିଁ । ସେଥିରେ ପୁଣି ଇତିହାସ ସାର୍ କହୁଛନ୍ତି କ'ଣ ନା, ସେଇ ବିଷୟକୁ ନେଇ ଏ ବର୍ଷ ସ୍କୁଲରେ ନାଟକ ହେବ । ଆଉ ସେ ଚରିତ୍ରରେ ମୁଁ ଅଭିନୟ କରିବି ? ତା' ଚରିତ୍ରରେ ମୁଁ ଅଭିନୟ କରିବି ନା ତାକୁ ଆଗ ଖତମ୍ କରିବି ?

ବାବୁ କାହିଁକି ତାକୁ ଏତେ ଘୃଣା ? ସେ କ'ଣ କଲା କି ?

ବିକ୍ରମ କ'ଣ କଲା ? ତା'ର କାରନାମା ତୁମେ ତା'ହେଲେ ପଢ଼ିନ କି ଜାଣିନ ? ଇତିହାସ ବହିପଢ଼ି ମୋ' ମୁଣ୍ଡକୁ ତ ପିତ ଚଢ଼ି ଗଲା । ତୁମେ ପଢ଼ିଥିଲେ ତାକୁ ତୁମେ ଗୁଳି କରିଦେଇଥାନ୍ତ ।

ବାବୁ ସେ କ'ଣ କରିଛି କହିବୁ ନା ଏମିତି ରକ୍ତ ଚାଉଳ ଚୋବୋଉଥିବୁ ।

ବିକ୍ରମ ତା'ହେଲେ କହୁଛି ଶୁଣ । ମମି ତୁ ବି ଶୁଣୁଥିବୁ । (କୋରସ୍ ସହ ବାପ-ମା'ଙ୍କ ଉପରୁ ଆଲୁଅ ଲିଭିଗଲା। ଆଲୋକ କେବଳ ବିକ୍ରମ ଉପରେ ରହିଲା)

୧୬୭୪ ମସିହାର କଥା । ନୌବାଣିଜ୍ୟରେ ଉନ୍ନତ ଉତ୍କଳର ସାଧବ ପୁଅମାନେ ଦେଶ ବିଦେଶରେ ବଣିଜ କରି ଆମ ରାଜ୍ୟକୁ ଧନ ଦରବ ବୋହି ଆଣୁଥିଲେ । ଆମ ରାଜ୍ୟର ବିଭିନ୍ନ ହସ୍ତଶିଳ୍ପ, ଖାଦ୍ୟ ଦ୍ରବ୍ୟ ସବୁ ବିଦେଶକୁ ନେଇ ସେଠାରେ ବିକ୍ରୟ କରି ସେମାନଙ୍କ ଦେଶରୁ ନାନା ଦରବ ଆଣି ଏଠାରେ ବାଣିଜ୍ୟ କରୁଥିଲେ । ସେଇ ସମୟରେ ବାଲେଶ୍ୱର ବନ୍ଦରର ସୁନାମ ସାରା ରାଜ୍ୟ ଓ ରାଜ୍ୟ ବାହାରେ ଭାରି ନାଁ ଡାକ ଥିଲା । ସେଇ ସମୟର କଥା...

## ପଞ୍ଚମ ଦୃଶ୍ୟ

(ଦେଖାଗଲା ସାହା ବନ୍ଦରର ଦୃଶ୍ୟ। ନୌଯାତ୍ରା ପାଇଁ ବୋଇତ ପ୍ରସ୍ତୁତ ହୋଇ ରହିଛି। ଶଙ୍ଖ ହୁଳହୁଳି ଭିତରେ ବୋଇତ ବନ୍ଦାଣର ଦୃଶ୍ୟ)

କୋରସ୍ ଆ କା ମା ବୈ ଗୁଆ ପାନ ଥୋଇ
ଗୁଆ ପାନ ତୋର, ମାସକ ଧରମ ମୋର ।
(ସେଇ କୋରସ୍‌ମାନେ ବିଭିନ୍ନ ଭାବେ ନୌକା, କାତ ଧରି ସାଧବ ବେଶରେ ବୋଇତ ବାହି ବାହାରିବେ।)

ମାଝିଗୀତ ହୋ ହୋ ହୋ...ହୋ ହୋ ହୋ...

(କୋରସ) ମାଝିରେ...ମାଝିରେ...ମାଝିରେ...

ଅଝାଲ ଟାଣି ଲଙ୍ଗର ଉଠା, ବୋଇତ ଯିବ ଦରିଆପାରି...
ସୁବର୍ଣ୍ଣରେଖାର ମୁହାଣ ଡେଇଁ, ସାହାବନ୍ଦରରୁ ଛାଡ଼ିବ ତରୀ
ମାଝିରେ...ମାଝିରେ...ମାଝିରେ...
ଦୁଉଣି ହେଉ ଅବା ସଲୁପ ବୋଇତ, ଅଥବା ହେଉ ସେ ଗୋରାପ ବୋଇତ
ଅଝାଳ ଉଡ଼ାଇ ପାଲ ଟାଣି ଦେଲେ, ଉତରା ପବନେ ଯିବଲୋ ମିତ
ମାଝିରେ...ମାଝିରେ...ମାଝିରେ...

କୋରସ ମାଝି-୧ କାଳିକା ପ୍ରସାଦ ମାଝି ଭାଇହୋ, ଏସନ କି ଚିଜ ନେଉଛ ବୋହି
ଖଟାଇଛ କେତେ ବଟମ ଟଙ୍କା, କେଉଁ ଦେଶ ଯିବ କୁହ ବୁଝାଇ

କୋରସ ମାଝି-୨ ଗଉରି ପ୍ରସାଦ ସଲୁପ ଭାଇ, ଶୁଣ ଆହେ ମାଝି ଶୁଣ
ବଟମ ମୋହର ପଚାଷ କୋଡ଼ି, ଅନ୍ୟାନ୍ୟ ଦରବ ସହସ୍ର କୋଡ଼ି,
ସୁନା ରୂପା ତାରକସି ଗହଣା, ଭୋଗରାଇ ଖଡ଼ି, ସପ ମଶିଣା
ଶିଂଘ ପାନିଆ ପାରଳାଖେମୁଣ୍ଡିର
ସରୁ ଚାଉଳ ବାଲେଶ୍ୱରର
ହଳଦୀଗୁଣ୍ଡିକୁ ପିମ୍ପୁଡ଼ି ବାସ,
ଅବା କଳାଧାନ ଚୁଡ଼ା ସୁବାସ, ରଖିଛି ଖଣିରେ ଭରି
ତୁମ ବୋଇତରେ କି ଦରବ ଅଛି କହିବ କି ଭାଇ ମୋତେ ବୁଝାଇ...

କୋରସ ମାଝି-୧ କହୁଛି କହୁଛି ଏତେ ଅଥୟ କିଆଁ ?
ବଟମ ଏସନ ପାଇଛି ଯାହା, ଟଙ୍କା ଶହେ କୋଡ଼ି ହୋଇବ ତାହା
ବରକୁ ଆଣିଛି ପାନ ପତର, ଖଇର ସାଙ୍ଗକୁ ଚୂନ ପଥର
ଶଙ୍ଖ ଓ ଶାମୁକା କଉଡ଼ି ମାଳି, ରଖିଛି ପୁଣି ଯେ ଭେଳିକି ଭେଳି
ଝୁଣା, ଚନ୍ଦନକୁ ଶାଳପତର, ହଳଦୀ ଗୁଣ୍ଡ ସେ କନ୍ଧମାଳର
ପିପିଲି ଚାନ୍ଦୁଆ, ଛତା, ସମ୍ବଲପୁରର ପାଟ ଶାଢ଼ୀ ମୁଁ
ନେଉଛି ଯତନେ ଭରି...
(ବାବା) ଭୁଷଣ୍ଡେଶ୍ୱରଙ୍କୁ ଜୁହାର କରି, ଭସାଇ ଦେଇଛି ଆମ ଏ ତରୀ
ସିଂହଳକୁ ଯିବ ଆଗ
ଜାଭା ଓ ସୁମାତ୍ରା ବୁଲି ଆସିବା, ଠିକ୍ ଥିଲେ ପାଣିପାଗ
(ସମୁଦ୍ର ଦୃଶ୍ୟ ଓ ନୌକା ଚାଲିଯିବ ।)

## ଷଷ୍ଠ ଦୃଶ୍ୟ

(ଜଙ୍ଗଲ ଦୃଶ୍ୟ। ତଅପୋଇ ତା' ଛେଳି ଘରମଣି ସହ ଖେଳୁଛି । ଗୀତ ଗାଇ ନାଚୁଛି ।)

ତଅପୋଇ ଘରମଣି ଆହେ ଘରମଣି
(ଗୀତ ନୁହେଁ ଭାଇମାନେ ଗଲେ ବୋଇତ ଟାଣି
ମାତ୍ର କବିତା ସାତଦରିଆ ଡେଇଁ, ଗଲେ ବଣିଜ ପାଇଁ

ଛନ୍ଦରେ) ଦେଶ ବିଦେଶ ବୁଲିବେ କଉଡ଼ି ପାଇଁ
ସୁନା ମୋହର ପାଇଁ ।
କେବେ ଫେରିବେ ଘର, ଦୁଃଖ ସରିବ ମୋର
ଭାଉଜ ଗଞ୍ଜଣା କେତେ ସହିବି କହ
ଘରମଣି ଆହେ ଘରମଣି ।

ଘରମଣି(ଗୀତ) : ଘରମଣି ମୁଁ ଘରମଣି, ଯାହା ମୁଁ କହୁଛି ସତମଣି
ପ୍ରତି ରବିବାର ପୂଜା କରିବୁ, ଖୁଦୁରୁକୁଣୀଙ୍କ ଓଷା କରିବୁ
ଭାଇଙ୍କର ଶୁଭ ମନାସୁଥିବୁ, ଭାଦ୍ରବ ମାସଟା ବିତାଇଦେବୁ
ଶୁଭଦିନ ନିଶ୍ଚେ ଆସିବ ଫେରି, ଭାଇମାନେ ଯେବେ ଆସିବେ ଫେରି
ତା'ପରେ ହୋଇବୁ ତୁ ଜେମାମଣି
ଘରମଣି ମୁଁ ଘରମଣି । (ନାଚି ନାଚି ଦୁହିଁଙ୍କର ପ୍ରସ୍ଥାନ)

## ସପ୍ତମ ଦୃଶ୍ୟ

କୋରସ୍ ୧ ବୋଇତରେ ବସି ସାଧବ ପୁଅ, ବିଦେଶକୁ ଗଲେ ନେଇ ମେଲାଣି
ଘରେ ଘରେ ତାଙ୍କ ଶୁଭ ମନାସି, ଭଉଣୀ ପୂଜିଲେ ଖୁଦୁରୁକୁଣୀ

କୋରସ୍ ୨ ଭାଦ୍ରବ ମାସର ସବୁ ରବିବାର, ଖୁଦୁରୁକୁଣୀଙ୍କ ଓଷା
ଭାଇମାନଙ୍କର ଶୁଭମନାସୀ...ଭଉଣୀ କରନ୍ତି ଓଷା ।

## ଅଷ୍ଟମ ଦୃଶ୍ୟ

(ଖୁଦୁରୁକୁଣୀ ଗୀତ ଓ ଖୁଦୁରୁକୁଣୀ ପୂଜାର ଦୃଶ୍ୟ ଦେଖାଗଲା ।)

ନାରୀ କୋରସ : ବନ୍ଦଇ ଦେବ ଜଗନ୍ନାଥ କମଳାଦେବୀର ସଂଗାତ ॥
ଲକ୍ଷ୍ମୀଦେବୀର ପ୍ରାଣନାହା ଶୋଭିତ ଶଙ୍ଖ ଚକ୍ର ବାହା ॥
ଯାବତ ଓଷା ବାର ବ୍ରତ ସେ ପୁରେ ଅଛଇ ସମସ୍ତ ॥
ଜ୍ୟେଷ୍ଠ ଆଷାଢ଼ ଯେ ଶ୍ରାବଣ ଭାଦ୍ରବ ମାସ ହୁଏ ପୁଣ ॥
କୃଷ୍ଣ ପ୍ରତି ପଦୀ ତିଥିରେ ଯେତେ ହୁଅଇ ରବିବାର ॥
ସନ୍ଧ୍ୟା ଆସନ୍ତେ ହୁଳହୁଳି ଦିଅନ୍ତି ନବୀନ ଦୁଲାଳି ॥
ଯାହାର ଯେଝା ମନଜାଣି ଦୟା କରନ୍ତି ଠାକୁରାଣୀ ॥
ଲେଖିଲା ଗୋପୀନାଥ ଦାସ ଏ ତଅପୋଇ ଗୀତ ଶେଷ ॥
କହନ୍ତି ପ୍ରଭୁ ପୀତବାସ ରୁକୁଣା ସତ୍ୟଭାମା ତୋଷ ॥
ଇତି ଶ୍ରୀକୃଷ୍ଣ ରୁକ୍ମଣୀ ସତ୍ୟଭାମା, ଭକ୍ତୌ ସାଧବ ପୁତ୍ରବଧୂ
ସ୍ୱସ୍ଥାନ ଗମନଂ ଇତି ।

ନାରୀ କୋରସ : ଜହ୍ନିଫୁଲ ଠୋ ଠା, କାକୁଡ଼ି ଫୁଲ ଠୋ ଠା,
(ନାଚି ନାଚି) ଗୁଣ୍ଡୁଚି ମୂଷା କହିଯାଇଛି, ଚାଉଳ ମୁଠେ ଥୋଇଥା ।

ଚକା ଚକା ଭଉଁରୀ ମାମୁ ଘର ଚଉଁରୀ, ମାମୁ ମୋତେ ମାଇଲେ
ମାଇଁ ମୋତେ ଧଇଲେ, ଦୁଧଭାତ ଖୋଇଲେ,
ସୁନାପିଲା ମୁହିଁରେ, ମୋ ପରି କିଏ ନାହିଁରେ ।
(ଗୀତ ଶେଷ ହେଲା । ଦେଖାଗଲା ବୋଇତ ଫେରନ୍ତି ଦୃଶ୍ୟ)

## ନବମ ଦୃଶ୍ୟ

(ସମୁଦ୍ରରେ ବୋଇତ ଫେରୁଥିବାର ଦୃଶ୍ୟ । ୪ର୍ଥ ଦୃଶ୍ୟର ଅନୁରୂପ ହେବ କେବଳ ବିପରୀତ ଦିଗରୁ ନୌକା ଫେରୁଥିବାର ଦେଖାଯିବ ।)

ମାଝି-୧ ମାଝି ହେ...ମାଝି ହେ...
ବହିଲାଣି ଥିରି ଦକ୍ଷିଣା ବାଆ ଦିଅରେ ଅଝାଳ ମେଲି
ପାଲଟାଣି କାତ ମାର ସାଥିରେ ଯିବା କଳିଙ୍ଗକୁ ଫେରି
ମନେ ପଡ଼ିଲାଣି ଆମ ଗାଆଁ ଭୂଇଁ ଧାନବିଲ ନଈ ପଠା ହୋ
ଜନମ ମାଟିର ଡାକ ଶୁଭିଲାଣି ଏବେ ତୁ ନଙ୍ଗର ଉଠା ହୋ ।
ମାଝି-୨ ଶ୍ରୀଜଗନ୍ନାଥଙ୍କୁ ମୁଣ୍ଡିଆ ମାରି ମାଆ ତାରିଣୀଙ୍କୁ ସୁମରଣା କରି
ହାଉଲେଇ ମାର କାତ ହୋ ମାଝି ତୁଣ୍ଡରେ ଧରିଥା ଗୀତ ହୋ
ଗାଁ ପଲ୍ଲୀ ସୁର ଅବା ଛାନ୍ଦ ଚମ୍ପୁ ତା' ସାଥେ ଶ୍ରୀଗୀତ ଗୋବିନ୍ଦପଦ

## ଦଶମ ଦୃଶ୍ୟ

(ଦେଖାଗଲା ବୋଇତ ଆସି କୂଳରେ ଲାଗିଲା । ସାଧବ ସ୍ତ୍ରୀମାନେ ଧୂପଦୀପ ବନ୍ଦାଣ ଥାଳି ଧରି ଶଙ୍ଖ ହୁଳହୁଳି ଦେଇ ବନ୍ଦପନା କରିବାକୁ ଗଲେ ।

ଗୀତ ଆସ ମିତଲୋ, ଆସ ସଖୀଲୋ, ଆସ ବନ୍ଦାଇ ଆଣିବା ସାଧବେ ଆସ ।
ବୋଇତରେ ବସି, ଆସିଲେଣି ଫେରି
ଭାସି ଭାସି ଆସି ଲାଗିଲାଣି ତରୀ
ବାଲେଶ୍ୱର ସାହାବନ୍ଦରେ - ଲୋ...
ଶଙ୍ଖ ବଜାଇ ହୁଳହୁଳି ଦିଅ
ବନ୍ଦାପନା ଥାଳି ହାତରେ ଧରିଲୋ...ଆସ ମିତଲୋ...।୧।
ଘରେ ଘରେ ଆଜି ପିଠାପଣା କର
ଆରିଷା, କାକରା, କ୍ଷୀର-କଦମ୍ବା
ହଳଦୀ ପତର - ନଡ଼ିଆମଣ୍ଡା ଲୋ
କଦଳୀ ପତରେ ସଜାଇ ରଖି
ହରଷେ କରିବା ତାଙ୍କୁ ସ୍ୱାଗତଲୋ...ଆସ ମିତଲୋ... ।୨।
(ଦେଖାଗଲା ବନ୍ଦରରେ ନୌକା ପହଞ୍ଚିଲାପରେ ସମସ୍ତଙ୍କୁ ଶଙ୍ଖ ହୁଳହୁଳି ଦେଇ ବନ୍ଦାପନା କରି ସ୍ୱାଗତ କରାଗଲା, ଫୁଲ ପକେଇ, ତିଳକ ଲଗାଇ, ମୁଣ୍ଡିଆ ମାରିଲା ପରେ ।)

କୋରସ୍ ପିଠା ପଣା ଖାଇ ହସ ମଉଜରେ ସାଧବପୁଏ ମାତିଲେ
(୧+୨) ବଣିକ ମଣି ସେ କ୍ଷେମ ଚାନ୍ଦ ସାହୁ କଣ୍ଢେଇ ବିବାହ କଲେ

## ଏକାଦଶ ଦୃଶ୍ୟ

(କଣ୍ଢେଇ ବାହାଘରର ଶୋଭାଯାତ୍ରା ଚାଲିଛି। ସବାରିରେ କଣ୍ଢେଇ ଯାଉଥିବାର ଦୃଶ୍ୟ।)

କୋରସ୍
ହାକୁମ ଧାବଲ...ହାକୁମ ଧାବଲ, ହାକୁମ ଧାବଲ ହୁଁ ହୁଁ
ଆଗରେ ପଡ଼ିଛି ଭଙ୍ଗା ସଡ଼େଇ, ହାକୁମ ଧାବଲ ହୁଁ ହୁଁ
ପାଦରେ ମୁଁ ତାକୁ ଦେଲି ଆଡ଼େଇ, ହାକୁମ ଧାବଲ ହୁଁ ହୁଁ
ବାମକଡ଼ ମାଡ଼ି ପାଦକୁ ଥାପିବୁ, ହାକୁମ ଧାବଲ ହୁଁ ହୁଁ
ଡାହାଣ ପାଦକୁ ଥିବୁ ସମ୍ଭାଳି ହାକୁମ ଧାବଲ ହୁଁ ହୁଁ
ହାକୁମ ଧାବଲ...ହାକୁମ ଧାବଲ

## ଦ୍ୱାଦଶ ଦୃଶ୍ୟ

(ଦେଖାଗଲା ସୁବେଦାରଙ୍କ ତମ୍ବୁରେ ନାଚଗୀତ ଚାଲିଛି। ମୋଗଲ ତାମସା ଢଙ୍ଗରେ ଅଭିନୟ ହେବ।)

ପହରାଦାର୍ (୨ ଜଣ ବର୍ଚ୍ଛା ଧରି ଦୁଇ ଆଡୁ ପ୍ରବେଶ) ହୁସିଆର୍ ବୋଲେ ମୁଁ ପହରଦାର୍, ସୁବେଦାର ଜନାବ୍ ପଧାର୍ ରହେ ହେଁ...

ସୁବେଦାର (ତାଳି / ନର୍ତ୍ତକୀ ନାଚ କରିବ। ଗୀତ- 'ଲେକେ ପେହେଲା ପେହେଲା ପ୍ୟାର'। ନାଚ ଭିତରେ ଚାଲିଛି। ବାହାରେ ଶୋଭାଯାତ୍ରା ଚାଲିଛି। ଲାଠି ଖେଳ, ବନାଟି ଖେଳ ଚାଲିଛି। ମଞ୍ଚର ଦୁଇପଟେ ଦୁଇଟି ଦୃଶ୍ୟ ଚାଲିଛି।)

ସୁବେଦାର୍ ଖାମୋସ୍...ପହରାଦାର୍...ପହରାଦାର୍ । କୌନ୍ କମ୍‌ବକ୍ତ ହାଲ୍ଲା କର୍ ରହାହେ ?

ପହରାଦାର୍ ହାଲ୍ଲା ନେହିଁ ସରକାର, ସାଦି କି ପଟ୍‌ୱାର୍ ଯା ରହିହେଁ ।

ସୁବେଦାର୍ କିସ୍‌କୀ ସାଦୀ ? ଇତନା ସାହାସ୍...ଇତନା ହିମ୍ମତ, ମେରା ପ୍ଲଟନ୍‌କେ ସାମନେସେ ପଟ୍‌ୱାର୍ ନିକାଲ୍ ରହାହେଁ ?

ପହରାଦାର୍ ହଜୁର୍, ସେ କ୍ଷେମ୍ ଚାନ୍ଦ ବଣିଆ ଅଛି । ବାଲେଶ୍ୱର ତାଲୁକାତ୍‌ର ସାହାବନ୍ଦର ଗାଁଓ କା ସବ୍‌ସେ ବଡ଼ା ସାହୁକାର ଅଛି ।

ସୁବେଦାର୍ ଇସ୍‌ଲିୟେ ବେଟା ପଇସାର କେରାମତି ଦେଖାଉଛି । ତାକୁ ହାଜର କରାଓ ।

ପହରାଦାର୍ ହାଁ ଜନାବ୍...ବଡ଼ ମୁର୍‌ଗା ଅଛି । ଖାସା ମାଲ ରଖିଛି । ଆପ୍‌ନା ବଡ଼ା ବେଟିର ସାଦି ଲାଗି ପନ୍ଦରା ଲାଖ୍ ରୂପିଆ ଘରମେଁ ଛିପାକେ ରଖାଥା । ଡକାୟତନେ ସବ୍ ଲୁଟ୍ ଲିୟା ।

ସୁବେଦାର୍ କ୍ୟା କେହେତେ ହୋ ? ପନ୍ଦରା ଲାଖ୍ ରୂପିୟା ଏକ ବେଟି କେ ସାଦୀକେ ଲିୟେ ? ଉସ୍‌କା କିତନା ବେଟି ହେ ଜାନ୍‌ତେ ହୋ ?

ପହରାଦାର୍ ତିନ୍ ବେଟୀ ହଜୁର୍ ।

ସୁବେଦାର୍ ତବ୍‌ତୋ ହମ୍‌ଭି ଆଜ୍ ମାଲାମାଲ୍ ହୋଇ ଯାୟେଁଗେ । ଯାଓ ଜଲ୍‌ଦି ପକଡ଼କେ ଲାଓ । (ଦେଖାଗଲା ସିପାହୀ ଧାଇଁଲେ ।)

| | |
|---|---|
| ପହରାଦାର୍ | (ଗୀତ) ଚାଲିଲୁରେ ଆମେ ପହରାଦାର, ହୁଅ ହୁସିଆର ରହୋ ତୟାର... |
| ପହର୍‌ଦାର୍-୨ | ଗର୍ଭିଣୀ ଗାଈ ରାସ୍ତା ଛୋଡ଼େଗା, ନେହିଁ ତୋ କରେଙ୍ଗେ ଖାତିରଦାରି<br>ଚାଲିଲୁରେ ଆମେ ପହରାଦାର୍...ସୁବେଦାର୍‌କା ପହରାଦାର୍ |
| ପହର୍‌ଦାର୍-୧ | କ୍ଷେମଚାନ୍ଦଜୀ, କ୍ଷେମଚାନ୍ଦଜୀ...<br>ବୋଲାରହେ ହେଁ ସୁବେଦାର୍‌ଜୀ<br>ସଲାମୀ ଲେକର୍ ହୁଅ ହାଜିର୍ |
| କ୍ଷେମଚାନ୍ଦ | ବନ୍ଦକର ଆରେ ବନ୍ଦ କର, ବାଜା ଓ ରୋଷଣୀ ବନ୍ଦକର<br>ପହରାଦାର ଆସିଛି ହୁକୁମ ନେଇ, ସୁବେଦାରଙ୍କର ତାମିଲ ନେଇ<br>ଗ୍ରହ ହେଲା ବାମ, ଧର ପ୍ରଭୁନାମ, ତ୍ରାହି ତ୍ରାହି କରସର୍ବେରେ... |
| ଗୁମାସ୍ତା | ଶୁଣ ମହାଜନେ ଶୁଣହୋ, ଦୁଃଖରେ ନୋହୁଁ କାତର ହୋ<br>ତୁମର ଗୁମାସ୍ତା ମୁହିଁ, ଉପାୟ ଦେଉଛି କହି...<br>ବଦଳାଇ ଦିଅ ଆଗ ପାଟ ପଗଡ଼ି...<br>ମୁଣ୍ଡେ ବାନ୍ଧି କସ୍ତାଶାଢ଼ି କଙ୍କଣ କୁଣ୍ଡଳ କାଢ଼ଲୋ...<br>ନଇଁ ସଲାମ କରିବ<br>ଉଚ୍ଚବାଚ ନକରିବ<br>କଥା କହୁଥିବ ସଦା ବିନୟ ସୁରେ ହୋ...<br>(କ୍ଷେମଚାନ୍ଦ ବେଶ ପଗଡ଼ି ପରିବର୍ତ୍ତନ କରି ଚାଲିଲେ) (ସମସ୍ତେ ଚାଲିଲେ) |
| କ୍ଷେମଚାନ୍ଦ | (ଗୀତ) କିବା ଦୋଷ ମୁହିଁ କଲି, ଗଧିଆ ମୁହେଁ ପଡ଼ିଲି । ରକ୍ଷାକର ହେ ରକ୍ଷାକର ଆହେ ଜଗନ୍ନାଥ ରକ୍ଷା କରହେ । ଚାଲନ୍ତୁ ପହରାଦାର୍ (ପହଞ୍ଚିବା ପରେ) |
| କ୍ଷେମଚାନ୍ଦ | ସୁବେଦାର୍ ଜନାବ କରେ ସଲାମ । ଦୋଷା ଦୋଷ ଅବା କରିଅଛି ଯାହା, ମାଫ୍ କର ମୋର ସରକାର୍ । |
| ସୁବେଦାର୍ | ତେରା ଭେଜା କ୍ୟା ବିଗଡ଼ଗୟାହେଁ...ସୁବେଦାର କେ ପଲଟନ୍ ଆଗେ ଅପନା ପଟୁଆର୍ ନିକାଲ ରହେହୋ । |
| କ୍ଷେମଚାନ୍ଦ | ଦୋଷାଦୋଷ ମୋର ମାଫ୍ କର, ବନ୍ଦ କଲି ମୋର ପଟୁଆର ।<br>ହଜାରେ ଥର ସଲାମ କରୁଛି ମାଫ କର ଆହେ ସରକାର । |
| ସୁବେଦାର୍ | ସଲାମ କରତା ହେଁ, ସଲାମୀ କାହାଁ<br>ମୁଫତ୍ ମେଁ କାମ ନେହିଁ ଚଲେଗା ୟାହାଁ<br>ସଲାମି ଅସ୍ରଫି ହାଜର କର, ନେହିଁ ତୋ ଗର୍ଦ୍ଦନ ହାଓ୍ୱଲେ କର୍ । |
| କ୍ଷେମଚାନ୍ଦ | (ଆଣ୍ଠେଇ) ପଇଠ କରିବି ଶପଥ କଲି, କେତେବା ଅର୍ସଫି କୁହନ୍ତୁ ଖୋଲି । |
| ସୁବେଦାର୍ | (ହାବି) ଏକ୍ ଲାଖ୍ ଅସ୍ରଫି କରେଗା ଭେଟି, ନେହିଁ ତୋ ମିଲେଗା ଏକ ଶୋ ଲାଠି । |
| କ୍ଷେମଚାନ୍ଦ | (ଗୀତ) ସୁବେଦାର୍ ହୋ ଥରେ ମୋ' ଦୁଃଖ ଶୁଣ, ସୁବେଦାର ହୋ<br>ରଖିଥିଲି ଘରେ ଯେତେ ଅସ୍ରଫି, ଝିଅ ବାହାଘର କରିବି ବୋଲି... |

ଡକାୟତ ସବୁ ବୋହି ନେଇଗଲେ
ତହିଁକୁ ମୋହର ଅବସ୍ଥା ଜାଣ ସୁବେଦାର ହୋ ।

ସୁବେଦାର୍ କିତ୍‌ନା ଅସ୍ରଫି ଚୋର୍‌ନେ ଲିୟା ?

ପହର୍‌ଦାର୍-୧ ପନ୍ଦରା ଲାଖ୍ ହଜୁର...ପନ୍ଦରା ଲାଖ୍ ।

ସୁବେଦାର୍ କିତ୍‌ନା ବେଟୀ ପୈଦା କିଆ ?

ପହର୍‌ଦାର୍ ତିନ୍ ବେଟୀ ସରକାର୍ ତିନ୍ ବେଟୀୟାଁ ।

ସୁବେଦାର୍ ଏକ ବେଟୀକୋ ପନ୍ଦରା ଲାଖ୍, ତୋ ତିନ୍ ବେଟୀ କୋ କିତ୍‌ନି ହୁଏ ? କିତ୍‌ନେ ହୁଏ କହୋ ?

କ୍ଷେମଚାନ୍ଦ (କଥା) ମରିଯିବି ସରକାର୍ ମରିଯିବି ମୁଁ । (ଗୀତ) ପରିବାର ନେଇ ଦରିଆକୁ ଡେଇଁ ଏ ଜୀବନ ଅବା ହାରି ଦେବି ମୁଁ ।
ସୁବେଦାର ଗୋ, ଥରେ ମୋ ଦୁଃଖ ଶୁଣ...

ସୁବେଦାର୍ ଏକ ଲାଖ୍ ପିର୍‌ଭି ଓ୍ୱାଜିବ୍ ବାତ୍...ଶୁନ୍ ବେଟା ଶୁନ୍, ମେଁ କ୍ୟା କହୁଁ...ତୁମ୍ ଯୋ ଦେଗା ଓ ତିନ୍ ଭାଗ ହୋଗା...ପହେଲା ଭାଗ୍ ପାଏଗ୍ ଦିଲ୍ଲୀ ଦରବାର...ଦୁସରା ଭାଗ୍ ଲେଙ୍ଗେ ଢାକା କେ ନବାବ ଫିର୍ ଯୋ ବଚେଗା ତଭି ମେରା ହୋଗା । ନେହିଁ ତୋ ବକ୍ତ ମେରା ପୁରା ବରବାଦ୍ ।

କ୍ଷେମଚାନ୍ଦ ହାତ ଯୋଡ଼ି କରେ ମିନିତି, କମ୍ କର କିଛି ସଲାମୀ ।

ସୁବେଦାର୍ ନେହିଁ ନେହିଁ । ପୁରା ଅସ୍ରଫି ଦେନା ପଡ଼େଗା ।

ପହର୍‌ଦାର୍ ଦେନା ପଡ଼େଗା...ଦେନା ପଡ଼େଗା । ମିଲେଗା ମିଲେଗା ଜରୁର୍ ମିଲେଗା ।

ସୁବେଦାର୍ (ଚିନ୍ତାକରି) ନେହିଁ ତୋ...ନେହିଁ ତୋ...ତିନ ଲଡ଼କି ହମ୍‌କୋ ଦେ ଦୋ ବେଟା । ଯାନି ଯୌତୁକ ନେହିଁ ଲଗେଗା । ଏକ୍‌କୋ ଭେଜୁଙ୍ଗା ଦିଲ୍ଲୀ ଦରବାର, ଦୁସରା ଜାଏଗୀ ଢାକାକେ ହାରେମ୍, ତିସର୍ ବନେଗୀ ମେରୀ ବେଗମ୍...ସମଝ ଗୟାହେ ତୋ ଭେଟ୍ କରି, ନେହିତୋ ସମଝାଓ ପହରାଦାର୍ ।

କ୍ଷେମଚାନ୍ଦ ମାଫକର୍ ସରକାର୍...

ପହର୍‌ଦାର୍ (ହସି) ମିଲେଗା ମିଲେଗା...ଜରୁର୍ ମିଲେଗା ।

ସୁବେଦାର୍ ତୁମ୍ ଯାଓ ଲଡ଼କୀ କୋ ଲେକର ଆଓ ।

ପହରାଦାର୍ ଚାଲିଲୁରେ ଆମେ ପହରାଦାର, ହୁଅ ହୁସିଆର ରହୋ ତୟାର ।

କ୍ଷେମଚାନ୍ଦ ଆହେ ଜଗନ୍ନାଥ (ବସି ପଡ଼ିବ) (ମଞ୍ଚର ଅନ୍ୟ ପାର୍ଶ୍ୱରେ ଦେଖାଯିବ ସାଧବର ୩ ଝିଅ କୁଆଁର ପୁନେଇଁ ବନ୍ଦାପନା କରୁଛନ୍ତି । ସଖୀ ମାନଙ୍କ ସହ ଗୀତ ଗାଇ ଝିଅମାନେ ନାଚୁଛନ୍ତି)

ଝିଅମାନେ ଚାନ୍ଦ ବନ୍ଦେଇବା ଆସଲୋ
ସଖୀ ଚାନ୍ଦ ବନ୍ଦେଇବା ଆସ
ପାନଗୁଆ ସାଥେ ଲିଆ ଖଇ ନେଇ,
ଟେକି ଦେଇଥିବା ଭୋଗ ଲୋ ସଖୀ
କୁଆଁର ପୁନେଇଁ ଜହ୍ନଗୋ ସଖୀ,
କୁଆଁର ପୁନେଇଁ ଜହ୍ନ
କୁଆଁରୀ ମନସେ ସପନ ଦେଖୁଛି,
ଆସିବେ ରାଜକୁମାର ଲୋ ସଖୀ
ଆସିବେ ରାଜକୁମାର । (ପହାରାଦାର ସେମାନଙ୍କୁ ଧରିବାକୁ ଚାହୁଁଛି । ସେମାନେ ଚିତ୍କାର କରି କାନ୍ଦୁଛନ୍ତି ।) (ସ୍ୱପ୍ନ କଟିଗଲା)

 କ୍ଷେମଚାନ୍ଦ ନାଇଁ...ମାଫ୍ କର୍ ସରକାର୍ ମାଫ୍ କର...
ଝିଅ ମୋର ଯଦି ଆଣିବ ଧରି, ଜାତି କୁଳ ସବୁ ଯିବଟି ସରି,
ନିଆଁ ପାଣି ସବୁ ବନ୍ଦ କରିଦେବେ, ଲାଜରେ ସବଂଶ ଯିବୁଟି ମରି ।

ସୁବେଦାର୍ ମେରା ହୁକୁମ୍ କୁବୁଲ୍ କରୋ ।(ଦି'ଜଣ ଉଠେଇ ନେଇଆସିବେ)
ମେରେ ହୁକୁମ କୁବୁଲ କରୋ, ନେହିଁ ତୋ ଗର୍ଦ୍ଦନ ହଓ୍ୱାଲେ କର । (ପ୍ରସ୍ଥାନ)

ପହର୍‌ଦାର୍ ସଲାମୀ ଅସ୍ରଫି ହାଜିର୍ କରୋ ।

ପହର୍‌ଦାର୍ : ନେହିଁ ତୋ ହମ୍ କୁଜ କରେଙ୍ଗେ ।

ପହର୍‌ଦାର୍-୧ ହଜୁର୍‌କେ ହୁକୁମ୍ ତାମିଲ୍ କରେଙ୍ଗେ । (ଦୂରକୁ ଆସି ସିପାହୀମାନଙ୍କ ମଧ୍ୟରେ ଚୁପ୍‌ଚୁପ୍ କରି କହିବା)

କ୍ଷେମଚାନ୍ଦ (ଚୁପ୍‌ଚୁପ୍) ଶୁଣହୋ ସିପାହୀ ସାହାବ
କମ୍ କର କିଛି ସଲାମୀ ମୋର
ନେହୁରା ହେଉଛି ତୁମ ପାଖର

ପହର୍‌ଦାର୍-୧ ନେହୁରା ଫେହୁରା ନେହିଁ ଚଲେଗା

ପହର୍‌ଦାର୍-୨ ବକ୍‌ସିସ୍ କୁଛୁ ଦେନା ପଡ଼େଗା ।

କ୍ଷେମଚାନ୍ଦ ଦେବି ଦେବି...ଅଲବତ୍ ଦେବି । (ନିଜକୁ ନିଜେ) ନଦେଇ ମୋର ବା କି ଚାରା ଅଛି । କେତେ ଦେବି...କେତେ ?

ପହରାଦାର୍-୧ : ବକ୍‌ସିସ୍ ଦିଅ ଦଶ ହଜାର୍ ।

ପହରାଦାର୍-୨ : ଏତକକୁ ଯଦି ପାରିବୁ ଦେଖି, ହଜୁର୍‌ଙ୍କୁ କହି କରିବୁ ମାଫ

କ୍ଷେମଚାନ୍ଦ ଧାର ଉଧାର ମୁଁ ଯାହା କରିବି, ବୋପା ରାଣ ଖାଇ ଢିଙ୍କି ଗିଳିବି । (ଟଙ୍କା ଦେଲେ ଓ ଚାଲିଲେ)
ଏଇ ନିଅ ଦଶ ହଜାର୍ ।

ପହର୍‌ଦାର୍-୧ ତେରା ପାଞ୍ଚକୁ ମେରା ପାଞ୍ଚ

ପହରାଦାର୍-୨ : ଅସ୍ରଫିକୁ ଗଣି ଅଣ୍ଟାରେ ଗୁଞ୍ଜ

କ୍ଷେମଚାନ୍ଦ ବାକି ପଚାଶ କୁ ନିଅହେ ଗଣି, ଉଦ୍ଧାର କର ହେ ମୋ ନେତ୍ରମଣି ଆଣେଇ। (ଟଙ୍କା ଥଳି ନେଲେ)

ପହର୍‌ଦାର୍-୧ ଶୁନ୍ କ୍ଷେମଚାନ୍ଦ ଶୁନ୍, ଉପାୟ ତୁମ୍‌କୋ କହୁଛି ଶୁନ୍ (କାନରେ କହିଲେ)
ଆମେ ଚାଲିଯିବା ଘଡ଼ିକ ଅନ୍ତେ, ଯେମନ୍ତ କହିଲୁ କର ସେମନ୍ତେ

ପହର୍‌ଦାର୍-୨ ବାକି କଥା ହମ୍ ସମ୍ଭାଲ ଲେଙ୍ଗେ

ପହର୍‌ଦାର୍-୧ ଏବାତ କିସିକୋ ନେହିଁ ବୋଲେଙ୍ଗେ (ପ୍ରସ୍ଥାନ)
(ପ୍ରବେଶ କଲେ ସୁବେଦାର୍ ପଛେ ପଛେ ପହର୍‌ଦାର୍ ୧ ଓ ୨)

ପହରାଦାର୍-୧ : ସଲାମ୍ ହଜୁର୍, ସଲାମ୍ ହଜୁର୍...

ପହରାଦାର୍-୨ : ସଲାମୀ ଆଣିଛୁ ପଚାଶ ହଜାର

ସୁବେଦାର୍ ଇତନା କ୍ୟୁଁ ? ଔର୍ ପଚାଶ ହଜାର୍ ଜଲଦି ଲାଓ, ନେହିଁତୋ ଲଡ଼କି ବାନ୍ଧ କେ ଲେ ଆଓ ।

ପହରାଦାର୍-୧ : ମାଫ୍ କିଜିଏ ହଜୁର୍, ମାଫ୍ କିଜିଏ।

ପହରାଦାର୍-୨ : ଯିତନା ମିଲାହେ କବୁଲ୍ କିଜିଏ।
ପହରାଦାର୍-୧ : ଗଜବ୍ ହୁଆହେ ସରକାର୍।
ପହରାଦାର୍-୨ : ଉସ୍‌କା ଲଡ଼କୀ ମର୍ ଗୟା ହୈ।
ପହରାଦାର୍-୧ : ରସି ଲଗାକେ ଲଟକ୍ ଗୟାହେ।
ପହରାଦାର୍-୨ : ଭାଗ ଚଲେଙ୍ଗେ ତୋ ଜାନ୍ ବଚେଙ୍ଗେ।
ପହରାଦାର୍-୧ ନେହିଁ ତୋ ହମାରା ଜାନ୍ ଜାୟେଙ୍ଗେ।
ପହରାଦାର୍-୨ : ପଚାଶ ହଜାର କେ ଲିୟେ କ୍ୟା ହମ୍ ମରେଙ୍ଗେ
ସୁବେଦାର ଐସା କ୍ୟୁଁ...ଐସା କ୍ୟୁଁ
(ଦେଖାଗଲା ମିଛ ଶବକୁ ଧରି ଶବ ବାହକମାନେ ଆସିଲେ)
ଶବବାହାକମାନେ: ରାମ୍ ନାମ୍ ସତ୍ୟ ହେ...ହରି ନାମ ସତ୍ୟ ହେ
ପହରାଦାର୍-୧ : କ୍ୟା କହତେହେଁ ଶୁନା ସରକାର୍ ?
ସୁବେଦାର୍ କ୍ୟା କହତେ ହେଁ ସମ୍‌ଝା ନେହିଁ । ଶୁନ୍‌କେ ବତାଓ, ସମଝେ ତୋ ସହି ?
ପହରାଦାର୍-୧ : ହମାରା ଲଡକୀକୋ ସୁବେଦାର୍ ନେ ମାରା
ପହରାଦାର୍-୨ : ହମ୍‌ଭି ଚାଲୋ ଉସ୍‌କୋ ମାରେଙ୍ଗେ
ପହରାଦାର୍-୧ : ଜୁଲୁମ୍ କାଲୁମ୍ ନେହିଁ ସହେଙ୍ଗେ
ପହରାଦାର୍-୨ : ଲାଠି କାଠି ସବ୍ ହମ୍ ପକ୍‌ଡ଼େଙ୍ଗେ
ଶବବାହକମାନେ: ରାମ ନାମ ସତ୍ୟ ହେ...
ହରି ନାମ ସତ୍ୟ ହେ...
ଉଭୟ ୧ - ୨ (କାନ୍ଦି) ଶୁଣ ହଜୁର୍ ଶୁଣ
ଆପ୍ ବଚେଙ୍ଗେ ତୋ ବାପ୍‌କା ନାମ୍, ନେହି ତୋ ଜିନ୍ଦେଗୀ ହୋଗା ହାରାମ୍ ।
ସୁବେଦାର୍ ଠିକ୍ କହତା ହେ ପେହେରାଦାର୍...ଉଠାଲେ ତମ୍ବୁ ଉଠାଲେ ସବାର
ଭାଗ ଚଲ୍ ପେହେଲେ ଭାଗ୍ ଚଲ୍...ସବ୍‌କୋ ଲେକେ ଭାଗ୍ ଚଲ୍ ।(ଘୋଡ଼ାଚଢ଼ି)
(ହସ) (ହାତ ବାଡେଇବା / କାନ୍ଧକୁ କାନ୍ଧ)
ଉଭୟ ୧ - ୨ (ଖୁସିରେ) ଭାଗଚଲ୍ ସବ୍ ଭାଗ୍‌ଚଲ୍...ପଗଡ଼ି ପକଡ଼ି, ଅଣ୍ଟାକୁ ଜାବୁଡ଼ି, ଭାଗ ଚଲ୍ ସବ୍ ଭାଗ ଚଲ୍ ।

## ତ୍ରୟୋଦଶ ଦୃଶ୍ୟ

(ପୂର୍ବ ଦୃଶ୍ୟ ବାବୁ ବିକ୍ରମ, ମାଆ । ଘରର ଦୃଶ୍ୟ ।)

ବିକ୍ରମ କହିଲ ଦେଖି ଡାଡ଼ି ଏଭଳି ମଣିଷକୁ କ'ଣ କ୍ଷମା ଦେବା ଉଚିତ ? ଯିଏ ଶାସକ ହୋଇ ପ୍ରଜାକୁ ସୁଶାସନ ଦେବା ବଦଳରେ ସେମାନଙ୍କୁ ଅର୍ଥପାଇଁ ଏମିତି ଶୋଷଣ କରିପାରେ ତାକୁ ଟେକା ପକାଇ ମୁଣ୍ଡ ଫଟେଇବା ତ ଛାର ବରଂ ମୋ' ହାବୁଡ଼ରେ ସିଏ ପଡ଼ିଥିଲେ ତ ମୁଁ ତାକୁ ଗୁଳି କରି ମାରି ଦିଅନ୍ତି ।
(ପ୍ରବେଶ କଲା ଦୀନବନ୍ଧୁ ମାଳୀ)

ଦୀନା ବାବୁ ଓଳିଗି, ମା' ଜୁହାର ।

ମାଆ ତିନି ଦିନ କହି ଘରକୁ ଯାଇଛୁ ଯେ ଆଜି ଆସି ୭ ଦିନ ହେଲାଣି । ଏ ମାସ ତୋ' ଦରମା ବନ୍ଦ ।

ଦୀନା କ'ଣ କରିବି ମାଆ, ମାଆ ମୋର ବୁଢ଼ୀ ମଣିଷ । ହାତ ଗୋଡ଼ ଚଳୁନି । ତା'ଦିହ ଆହୁରି ଖରାପ ହୋଇଗଲା । ଡାକ୍ତରଖାନା ନେବାକୁ ପଡ଼ିଲା, ଟିକିଏ ଭଲ ହେଲାରୁ ଡାକ୍ତରଖାନାରୁ ନେଇ ଘରେ ଛାଡ଼ି ଦେଇ ଆସିଲି । (ବ୍ୟାଗ୍‌ଟା ରଖିଲା) ମା' ଏଇଟା ଆଣିଛି, ରଖି ଦିଅନ୍ତୁ ।

ମା' କ'ଣ ? ସେଥିରେ କ'ଣ ଅଛି ?

ଦୀନା ସାହେବ କହିଥିଲେ, ଗାଁରୁ ହାତବୁଣା ଟସର ଶାଲ ତିନିଟା ଆଣିଛି ।

ବାବୁ ନେଇଯା ଘରେ ରଖି ଦେଇ ଆସିବୁ ।

ବିକ୍ରମ ତିନିଟା କାହା ପାଇଁ ? ଗୋଟିଏ ତ ଡାଡ଼୍ ନିଜପାଇଁ ଆଣିଥିବେ, ଆଉ ଦୁଇଟି କ'ଣ ? ଗୋଟିଏ ଦିଲ୍ଲୀ ଦରବାରକୁ, ଆଉ ଗୋଟିଏ ଭୁବନେଶ୍ୱର ଦରବାରକୁ ପଠାଇବେ ନା ସେଠାକୁ ପଠେଇବା ନାଁରେ ନିଜେ ସବୁ ହଡ଼ପ କରିବେ ରସିଦ୍ ଖାଁ ସୁବେଦାର୍ ଭଳି ।

ମାଆ ବିକ୍ରମ !

ଦୀନା ନା ନା...ଗୋଟିଏ ଆପଣଙ୍କ ପାଇଁ ଆଉ ଗୋଟିଏ ମାଆଙ୍କ ପାଇଁ ।

ବିକ୍ରମ ଆଉ ଗୋଟିଏ ?

ଦୀନା ସାହେବଙ୍କର

ବିକ୍ରମ ସେଇଆତ ମୁଁ କହୁଛି । ସୁବେଦାର୍‌ଙ୍କର

ଦୀନା ନାଇଁ ନାଇଁ, ସାହେବଙ୍କର

ବିକ୍ରମ କ'ଣ ସଲାମୀ ?

ଦୀନା ନାଇଁ ଭେଟି...

ବିକ୍ରମ (ହସିଲା) ସେଇ ଏକା କଥା । ସେଦିନର ସଲାମୀ ଆଜି ଭେଟିରେ ପରିଣତ ହୋଇଛି । ଆଉ ସେଦିନର ସୁବେଦାର୍ ଆଜି...

ବାବୁ ବିକ୍ରମ ?

ବିକ୍ରମ ଏବେ ଭାବୁଛି...ଟେକା ପକାଇ ଆଉ କାହାର ମୁଣ୍ଡ ଫଟେଇବା ଅପେକ୍ଷା, ଟେକା ବାଡ଼େଇ ନିଜ ମୁଣ୍ଡ ଫଟେଇ ଦେବା ଉଚିତ । (ନିଜ ମୁଣ୍ଡକୁ ବାଡ଼େଇଚି)

ମାଆ ଆରେ ଆରେ ତୁ ଏ କ'ଣ କରୁଛୁ ? (ତାକୁ ଧରିଛନ୍ତି)

ବିକ୍ରମ ଆପଣା ସୁନାତ ଭେଣ୍ଡି...କି ଲାଭ ହେବ ବା କାଟି କା ତଣ୍ଟି ?

ମାଆ କ'ଣ ତୁ କହୁଛୁ ମୁଁ କିଛି ବୁଝିପାରୁନି

ବିକ୍ରମ ଘର ଢିଙ୍କି ଯେବେ କୁମ୍ଭୀର ହୋଇବ, ଏଇ ଲାଜ କଥା କାହାକୁ କହିବ ? ଏ ଘରକୁ ଆଜି ଆଉ ଜଣେ ସୁବେଦାର୍ ବେଶ ବଦଳାଇ ପଶି ଆସିଛି । ତାକୁ ଉପଯୁକ୍ତ ଶାସ୍ତି ଦେବା ଦରକାର । ତା' ମୁଣ୍ଡ ଫଟାଇବା ଦରକାର ।

(ବିକ୍ରମ ଟେକା ଫିଙ୍ଗିଛି ଭିନ୍ନ ଏକ ଜାଗାକୁ ଅଥଚ ବାବୁ ମୁଣ୍ଡରେ ହାତ ଦେଇ ଚିତ୍କାର କରି ବସି ପଡ଼ିଛନ୍ତି । ଯେମିତି ଟେକାଟା ଆସି ତାଙ୍କ ମୁଣ୍ଡରେ ବାଜିଲା ।)

ବାବୁ ଆଃ... (ମୁଣ୍ଡରେ ହାତ ଦେଇ)

ମାଆ ଆମ୍ବୁଲାନ୍‌ସକୁ ଫୋନ୍ କର । ଆମ ଡାକ୍ତର ବାବୁଙ୍କୁ ଡାକିଦେ ଦିନବନ୍ଧୁ । (ଦିନା ପଳେଇଛି) ତୁ ତୋ' ବାପାଙ୍କ ମୁଣ୍ଡ ଉପରକୁ ହାତ ଉଠାଇଲୁ କୁଳାଙ୍ଗାର ।

ବିକ୍ରମ ବାପାଙ୍କୁ ନୁହେଁ ସୁବେଦାର୍‌କୁ ।

ମାଆ ତୁ ତାଙ୍କ ମୁଣ୍ଡ ଫଟେଇଛୁ ଜାଣିଲେ ପୋଲିସ୍ ତତେ ବାନ୍ଧି ନେବ ।

ବିକ୍ରମ (କାଳି) : ତୁ ଚାହିଁଲେ ମୋତେ ଫାଶୀ ବି ଦେଇପାରୁ । ଆପତ୍ତି ନାହିଁ ।

(ପ୍ରବେଶ କଲେ ଡାକ୍ତର ଓ ଦିନବନ୍ଧୁ)

ଡାକ୍ତର ଦେଖି (ଦେଖିଛନ୍ତି) କ୍ଷତ ଏତେ ଗଭୀର ନୁହେଁ କି ମାରାତ୍ମକ ନୁହେଁ । ମଲମ ଲଗେଇ ବ୍ୟାଣ୍ଡେଜ୍ କରିଦେଲେ ଠିକ୍ ହୋଇଯିବ ।

ବାବୁ (ଉଠି) ଠିକ୍ କହିଛନ୍ତି ଡାକ୍ତରବାବୁ । କ୍ଷତ ବେଶୀ ଗଭୀର ନୁହେଁ, ମାତ୍ର ଗମ୍ଭୀର । ମାରାତ୍ମକ ନୁହେଁ ସତ, ମାତ୍ର ମର୍ମସ୍ପର୍ଶୀ ।

ଡାକ୍ତର ହେଲେ ଏମିତି କେମିତି ହେଲା ? ଦୀନବନ୍ଧୁ କହୁଥିଲା ସାନବାବୁଙ୍କ ଟେକା ବାଜି ଆପଣଙ୍କର ଏ ଅବସ୍ଥା...

ବାବୁ ହଁ, ବିକ୍ରମ ଟେକା ମାରୁଥିଲା ସୁବେଦାରଙ୍କ ମୁଣ୍ଡକୁ, ଆଉ ଟେକାଟା ବାଜିଲା ମୋ' ମୁଣ୍ଡରେ । ଭଲହେଲା...ମୋ' ମୁଣ୍ଡରେ ବସିଥିବା ସୁବେଦାରଙ୍କର ଭୂତଟା ଅନ୍ତତଃ ମୋ' ମୁଣ୍ଡରୁ ଅନ୍ତର୍ଦ୍ଧାନ ହୋଇଗଲା । ଦେହ ଭିତରେ ଥିବା କିଛି ପୋତି ଗନ୍ଧମୟ ରକ୍ତକୁ ବାହାର କରି ଦେଇ ଏ ମନଟାକୁ ବେଶ୍ ହାଲୁକା କରିଦେଲା ।

ଏଥର ମୁଁ ଅନ୍ତତଃ ଭୁଲ୍ ଠିକ୍‌ର ହିସାବଟା କରିବା ପାଇଁ ମୋ' ବିବେକ ସହିତ ଦି' ପଦ କଥା ହୋଇପାରିବି ତା'ର ପରାମର୍ଶ ନେଇପାରିବି । କଥାରେ ଅଛି ଅନ୍ଧ ଥରେ ବାଡ଼ି ହଜାଏ ।

ଆଜି ପର୍ଯ୍ୟନ୍ତ ମୁଁ ହୁଏତ ଅନେକଥର ବାଡ଼ି ହଜେଇଥିବି । କିନ୍ତୁ ଆଜିଠାରୁ ଏ ବାଡ଼ି ଆଉ କେବେ ହଜେଇ ପାରିବି ବୋଲି ଭାବି ପାରୁନି ।

(ବିକ୍ରମକୁ ଅନେଇଲେ । ବିକ୍ରମ ପାଦ ଧରି କାନ୍ଦି ଉଠିଛି ।)

ବିକ୍ରମ ମୋତେ କ୍ଷମା କରିଦିଅ ବାପା...ଟେକା ଫୋପାଡ଼ିବା ମୋର ଉଚିତ ନଥିଲା । ମୁଁ ଭୁଲ୍ କରିଛି ।

ବାବୁ ତୋର ଏ ଟେକାଟା ଅନେକ ଆଗରୁ ମୋ' ମୁଣ୍ଡରେ ବାଜିବା ଉଚିତ୍ ଥିଲା । ଛାଡ଼ ସେ କଥା... ଆରେ ତୁ ତ ମୋ' ହିରୋ । (ସ୍ତ୍ରୀ)କୁ ଆରେ କାନ୍ଦୁଛ କାହିଁକି ? ଚାହିଁଛ କ'ଣ ? ସ୍କୁଲରୁ ଆସି ସେ କିଛି ଖାଇନି, ତାକୁ ଖାଇବାକୁ ଦିଅ ଆଉ ଆମ ସମସ୍ତଙ୍କ ପାଇଁ ଚା' ଜଳଖିଆ ଆଣ ।

ବିକ୍ରମ ଆଉ ଚାଦର ?

ବାବୁ ଯା' ଚାଦର ତାକୁ ଫେରେଇ ଦିଅ ।

ଦୀନବନ୍ଧୁ ଚାଦର ନେଇ ମୁଁ କ'ଣ କରିବି ବାବୁ ?

ବାବୁ ଭିତରକୁ ଯା ମାଆ ବୁଝେଇ ଦେବେ । (ମାଆ, ବିକ୍ରମ ଓ ଦୀନବନ୍ଧୁ ପ୍ରସ୍ଥାନ)

ଡାକ୍ତର ସାର୍ ଆଣ୍ଟିବାୟଟିକ ୫ ଦିନ ଖାଇ ଦେଲେ କ୍ଷତ ଶୁଖିଯିବ ।

ବାବୁ ଜାଣେ । କ୍ଷତ ଶୁଖିଯାଏ...ଦାଗ ବି ଲିଭିଯାଏ । ହେଲେ ମୁଁ...ମୁଁ ଚାହୁଁଛି ଏ କ୍ଷତ ନ ଶୁଖୁ କି ଏ ଦାଗ ଜୀବନ ସାରା ନଲିଭୁ ।

ଡାକ୍ତର କାହିଁକି ?

ବାବୁ ଏ ଦାଗ ଦେଖିଲେ ନିଇତି ମୁଁ ହସିବି, ଆଉ ଇତି ବି ହସିବ ।

ଡାକ୍ତର ଇତି ? ଇତି କିଏ ? ଆପଣଙ୍କ ମ୍ୟାଡ଼ାମ୍ ?

ବାବୁ ନାନା ମୋ ମ୍ୟାଡ଼ାମ୍ ନୁହେଁ...ଇତି ହେଲା ଇତିହାସ...

(ଦୁହେଁ ହସିଲେ...ଦୀନବନ୍ଧୁ ଆସି ହସିଲା । ହସି ହସି ଆସିଲେ ମ୍ୟାଡ଼ାମ୍ ଓ ତାଙ୍କ ହାତରେ ଚା' ଏବଂ ଖାମ୍‌ରେ ଟଙ୍କା ।)

ବାବୁ ଦୀନବନ୍ଧୁ ନିଅ ତୁମ ସାଲଗୁଡ଼ିକର ଦାମ... । (ଟଙ୍କା ଖାମ୍‌ଟା ବଢ଼େଇ ଦେଲେ ଆଉ ଚା' ପିଇଲେ ।)

ଦୀନବନ୍ଧୁ ନା ଟଙ୍କା ନେଇ ମୁଁ କ'ଣ କରିବି ? ମୁଁ ତ ଚାଦର ବିକିବାକୁ ଆଣିନି ।

ବାବୁ ଟଙ୍କା ନ ନେଲେ ଚାଦର ଫେରସ୍ତ ନେବ - ଏବେ କୁହ ଟଙ୍କା ନବ ନା ଚାଦର ?

ଦୀନବନ୍ଧୁ ହଉ ତା'ହେଲେ ଦିଅନ୍ତୁ । (ଟଙ୍କା ନେଲା)

କୋରସ୍ : (ଗୀତ)

ବାବୁ ବାହାରିଲେ ସଫେଇ କରି,
ଅନ୍ତର ବାହାର ସଫେଇ କରି
ସଫେଇ କରିବା ଝାଡୁକୁ ଧର,
ରାସ୍ତାଘାଟ ଅବା ଘର ବାହାର
ପାଇଖାନା ଅବା ଅଫିସ ଘର,
ତା' ଠାରୁ ଜରୁରୀ ନିଜ ଅନ୍ତର
ମଇଳା ଏଠାରେ କୁଢ଼କୁ କୁଢ଼,
କଳା ବଜାରୀକୁ ଲାଞ୍ଚର ଝଡ଼
ଅପରାଧ ପୁଣି ସ୍ୱାର୍ଥର ଭିଡ଼,
କରେ ଆମ ଦେଶ କି ନାରଖାର
ଅନ୍ତର ବାହାର ସଫେଇ କର,
ସଫେଇ କରିବା ଶପଥ କର
ଆଉ ସୁବେଦାର୍ ରହିବେ ନହିଁ,
ଭେଟିକି, ସଲାମି ଦେବା ଉଠାଇ
ଇତି ବି ହସିବ ଆମେ ବି ହସିବା,
ନିର୍ମଳ ହୋଇବ ଏ ଦେଶ ଭାଇ
ଇତି ବି ହସିବ, ଆଜିବି ହସିବ,
କାଲି ବି ହସିବ ଭବିଷ୍ୟତ
ପ୍ରକୃତି ହସିବ ପରିବେଶ ସାଥେ,
ପର ପୀଢ଼ି ହେବେ ସୁରକ୍ଷିତ ।
ସାରେ ଯାହାଁ ସେ ଆଚ୍ଛା...
ହିନ୍ଦୁସିତା ହମାରା ହମାରା (୨)
ହମ୍ ବୁଲ୍‌ବୁଲେ ହେଁ ଉସକି,
ଏ ଗୁଲ୍ ସିତା ହମାରା ହମାରା ।
ବନ୍ଦେ ମାତରଂ...

(ଅନ୍ଧାର)

## ପାତ୍ର ପରିଚୟ

| | |
|---|---|
| ଜମାଲ | ସୁଶାନ୍ତ ଦାସ ମହାପାତ୍ର |
| ପ୍ରତାପ | ମି. କେ.କେ |
| ରାକେଶ | ଚିରଞ୍ଜୀବ ବିଶ୍ୱାଳ |
| ସର୍ଦ୍ଦାର | ଜ୍ୟୋତିର୍ମୟୀ ମିଶ୍ର |
| ସିପାହୀ | ଭକ୍ତି, ପବନା, କାଉ ଓ ଅନ୍ୟମାନେ |
| ପାକିସ୍ତାନର ପ୍ରଧାନମନ୍ତ୍ରୀ : | ମି. ପ୍ରିୟରଞ୍ଜନ |
| ଭାରତର ପ୍ରଧାନମନ୍ତ୍ରୀ | ଦେବବ୍ରତ ପଟ୍ଟନାୟକ |
| ଭାରତମାତା | ସୁନନ୍ଦା ପରିଡ଼ା |
| ମଞ୍ଚ | ପ୍ରହ୍ଲାଦଦତ୍ତ ସାହୁ |
| ସଙ୍ଗୀତ | ଶକ୍ତିପ୍ରସାଦ ମିଶ୍ର |
| ରୂପସଜ୍ଜା ଓ ପୋଷାକ | ମ୍ୟାଜିକ ଥିଏଟର୍ |
| ନିର୍ଦ୍ଦେଶନା | ପ୍ରହ୍ଲାରଞ୍ଜନ ଖଟୁଆ |
| ପ୍ରଥମ ପରିବେଷଣ | ରବୀନ୍ଦ୍ର ମଣ୍ଡପ, ଭୁବନେଶ୍ୱର |

# ପ୍ରଥମ ଦୃଶ୍ୟ

(ଦେଖାଗଲା ସୀମାନ୍ତରେ ପ୍ୟାରେଡ୍ ଚାଲିଛି । ପ୍ୟାରେଡ୍ ପରେ ଦୁଇପଟର ସୁବେଦାର ପରସ୍ପରକୁ ମିଠାପ୍ୟାକେଟ୍ ଦେଇଛନ୍ତି । କିଛି ସମୟପରେ ତାର ବାଡ଼ର ଦୁଇପାଖରେ ଥିବା ଦୁଇଜଣ ନିଜନିଜର ସୀମାନ୍ତରେ ପହରା ଦେଉଛନ୍ତି । ରାତ୍ରି ବଢ଼ି ଚାଲିଛି, ତୁଷାର ପାତ ମଧ୍ୟ ହେଉଛି । କିଛି ସମୟ ପରେ ଭାରତ ପଟର ସୈନିକ ପ୍ରତାପ ଚା- ପିଇବା ପାଇଁ ନିଜ ବ୍ୟାଗରୁ ଥର୍ମୋଫ୍ଲାସ୍ ବାହାର କରିଛି । କିନ୍ତୁ ସେଥିରେ ଚା ଶେଷ ହୋଇଯାଇଛି । ଅନ୍ୟପାଖରେ ଥିବା ପାକିସ୍ତାନୀ ସୈନ୍ୟ ଜମାଲୁଦ୍ଦିନ ତାହା ଲକ୍ଷ୍ୟ କରିଛି ଓ ନିଜର ଥର୍ମୋଫ୍ଲାସ୍ ବାହାର କରି ଦେଇଛି)

ଜମାଲ — ଦେଖୋ ଦୋସ୍ତ ଇସ୍‌ମେଁ ଚାୟ ହୈ । ଲୋ, ଗରମ ଗରମ ଚାଏ ପିଲୋ ଥୋଡ଼ା ଆରାମ ମିଲେଗା ।

ପ୍ରତାପ — ନା.. ନା.. ତୁମ ପାଖରୁ ଚା ପିଇବି କାହିଁକି ? ତୁମ ପାଇଁ ପରା ଆମର ଏ ଅବସ୍ଥା ।

ଜମାଲ — ଦେଖୋ ଦୋସ୍ତ.. ଦୁଷମନି ଦେଶ ଦେଶ କୋ ଲେକର ହେ । ସରକାର୍ ସରକାର କେ ଲେକର ହେ । ହମ୍ ଦୋନୋ କେ ବିଚମେଁ ନା ଦୋସ୍ତି ହେ ନା ଦୁଶମନି । ହମ ତୋ ସିର୍ଫ ଆମ ଆଦମୀ ହେ ।

ପ୍ରତାପ — ସେଇକଥା ଟିକିଏ ତୁମ ସରକାରକୁ କୁହନ୍ତ ନାହିଁ । ବୁଝେଇ ଦିଅନ୍ତ ନାହିଁ । ନିଜେ ପଛେ ଖାଇବାକୁ ପାଉନ,କିନ୍ତୁ ଅନ୍ୟକୁ ସମୟ ସୁବିଧା ଦେଖି କେଞ୍ଚିଦେବାକୁ ଛାଡୁନ । ନିଜ ଲୋକମାନଙ୍କର ସୁଖ ସୁବିଧାକୁ ନ ଦେଖି, ଆମ ଦେଶର ଲୋକଙ୍କ ଭିତରେ ଅଶାନ୍ତି ଆଉ ଆତଙ୍କ ସୃଷ୍ଟି କରିବାକୁ ଆତଙ୍କବାଦୀ ପଠାଉଛ । ସେଇଥି ପାଇଁ ଶହ ଶହ କୋଟି ଟଙ୍କା ଖର୍ଚ୍ଚ କରୁଛ । ବିଛିନ୍ନତା ବାଦୀ ସୃଷ୍ଟି କରୁଛ । ସେମିତି ନିଜ ଖାଲରେ ନିଜେ ପଡ଼ି ବଂଲାଦେଶ ହରାଇଲ ତଥାପି ଜ୍ଞାନ ହଉନି । ଆତଙ୍କବାଦୀ, ତାଲିବାନ ସୃଷ୍ଟି କଲଯେ ତୁମରିସେନା ବାହୀନିର ସ୍କୁଲରେ ପଶି ଶହ ଶହ ନିରୀହ ପିଲାମାନଙ୍କୁ ସେମାନେ ଗୁଳି କରି ମାରିପକାଇଲେ । ଆରେ ଅଣ୍ଟାଛୁରୀ ପେଟକାଟେ ବୋଲି କ'ଣ ଜାଣିନ ? ନା ଜାଣିଶୁଣି ଅଙ୍ଗାର କାଢ଼ିବ ବୋଲି ନିଆଁ ଗିଳୁଛ ?

ଜମାଲ — ଇସ୍‌ମେଁ ମେରା କ୍ୟା ହାତ ହେ ଦୋସ୍ତ ? ମେରେ ଉପର କ୍ୟୁଁଉ ଗୁସ୍‌ସା ନିକାଲ ରହେ ହୋ ?

ପ୍ରତାପ — ଗୁସ୍‌ସା ତୁମାହାରେ ଉପର ନେହିଁ, ମଗର ତୁହ୍ମାରା ଦେଶ କେ ଉପର, ତୁହ୍ମାରା ସରକାର, ଔର ସେନା କେ ଉପର, କାହିଁକି ନିଆଁ ସାଙ୍ଗରେ ଖେଳୁଛ ? କ'ଣ ମିଳୁଛି ତୁମକୁ ? ନିଜେ ଜଳି ପୋଡ଼ି ମରୁଛ । ଅନ୍ୟକୁ ମାରୁଛ । ତୁମେ ମୋତେ ଦୋସ୍ତ କହୁଛ, ଚା ଦେଉଛ, ହେଲେ ତୁମ ଦୋସ୍ତିକୁ ବିଶ୍ୱାସ କରିବି କେମିତି ? ତୁମ ହାତରୁ ଚା ନେଇ ପିଇବି କେମିତି ?

ଜମାଲ — ଦୋସ୍ତି କେ ନାମ ପରଭି ଆପ ମେରା ବିଶ୍ୱାସ ନେହିଁ କରୋଗେ ?

ପ୍ରତାପ କେମିତି କରିବି କୁହ ? ଅତୀତର କଥା ତୁମେ ମନେ ପକାଅ, (ଯୁଦ୍ଧର... ଶବ୍ଦ) ୧୯୬୫ରେ ଆମ ସହିତ ଯୁଦ୍ଧ କରି ହାରିଲ ଅଥଚ ସେଇ ଦୋସ୍ତିର ଖାତିରରେ ପ୍ରଧାନମନ୍ତ୍ରୀ ଲାଲବାହାଦୁର୍ ଶାସ୍ତ୍ରୀ ତୁମ ସହିତ ତାସକେଣ୍ଟରେ ଶାନ୍ତି ଚୁକ୍ତି କରି ପ୍ରାଣତ୍ୟାଗ କଲେ। ଅଥଚ ତୁମେ ସେ ଚୁକ୍ତି ମାନିଲ ନାହିଁ। ୧୯୭୧ରେ ତୁମେ ପୁଣି ପରାସ୍ତ ହେଲ। ବଂଲାଦେଶ ସୃଷ୍ଟି ହେଲା। ଆମ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ତୁମର ୯୫ହଜାର ସୈନ୍ୟଙ୍କୁ ମୁକ୍ତ କରିଦେଇ ଶିମିଳା ରାଜିନାମା କଲେ। ପରବର୍ତ୍ତୀ ସମୟରେ ତୁମେ ତାଙ୍କୁ ଅବଜ୍ଞାକରୁଛ। ୧୯୯୧ରେ ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀ ଶାନ୍ତି ଯାତ୍ରା ପାଇଁ ବସରେ ବସି ଲାହୋର ଗଲେ ତୁମେ ତାଙ୍କ ପଛରୁ ଛୁରୀ ଭୁଷି କାରଗିଲରେ ଯୁଦ୍ଧ ଘୋଷଣା କଲ.. ବିଶ୍ୱାସ ଘାତକ ଭଳି ତୁମେମାନେ ବାରମ୍ବାର ପ୍ରତାରଣା କରୁଛ। ତୁମକୁ କେମିତି ବିଶ୍ୱାସ କରିବି କୁହ ?

ଜମାଲ ଓ୍ୱତୋ ସଚ୍ଚି ବାତ୍ ହେ। ପର ମେଁ କ୍ୟା କରୁଁ? ମେଁ ତୋ ଏକ ସିପାହି ହୁଁ, ସୀମାନା କୋ ପହରା ଦେନାମେରା କାମହେ। ଇସସେ ଜ୍ୟାଦା, ନା ମେଁ କୁଛ କରସକତା ହୁ। ନା କୁଛ୍ କହ ସକତା ହୁଁ। ଯେରାବେପାରୀ କି ଆତଙ୍କ ବାଦୀଙ୍କ ସହିତ ମୋର ସମ୍ପର୍କ କଣ? ଆମ ଦେଶ ତୁମ ସହିତ ଶତୃତାର ବ୍ୟବହାର କରିଛି ତେଣୁ ତୁମେ ମୋତେ ବିଶ୍ୱାସ କରୁନ। କିନ୍ତୁ ମୁଁ ତୁମର କ'ଣ ଶତୃତା କରିଛି କୁହ ? ନା ମୋର ଏ ଚ'ର ବା ତୁମ ସହିତ ଶତୃତା କ'ଣ ଥାଇପାରେ।

ପ୍ରତାପ ଶତୃତା ବ୍ୟକ୍ତିଗତ ନୁହେଁ। ମୁଁ ଜାଣେନା ତୁମ ଚ ପିଇବାରେ ମୋର ବା କିଛି ବ୍ୟକ୍ତିଗତ ଆପତ୍ତି ଅଛି। ଜାତି ବା ଧର୍ମର ଭିନ୍ନତାକୁ ମୁଁ କେବେ ଶତୃତା ବୋଲି ମାନେ ନାହିଁ। ଅଥଚ ଆମର ଶତୃତା ବିଶ୍ୱାସର ମୁଁ ତୁମକୁ ବା ତୁମେ ମୋତେ ବିଶ୍ୱାସ କରିପାରିଲେ ହିଁ ଏ ଶତୃତା ଆପେ ଆପେ ଶେଷ ହୋଇଯାଆନ୍ତା।

ଜମାଲ ତୁମେ ଠିକ୍ କହିଛ ଦୋସ୍ତ। ତାହେଲେ ମୋ ହାତରୁ ଚ ନ ପିଇବାର କାରଣ ମଧ ଠିକ୍ ସେଇଆ ? ଠିକ୍ ଅଛି ଯଦି ଭାବୁ ଥାଅ ଯେ ଏଥିରେ ଚ ସହିତ ଅନ୍ୟ କିଛି ବିଷାକ୍ତ ଦ୍ରବ୍ୟ ମିଶାଯାଇଛି ତାହେଲେ ଆଗ ମୁଁ ପିଉଛି ତାପରେ ଇଚ୍ଛା ହେଲେ ତୁମେ ପିଇପାର। ( ଚ ପିଇଛି ଓ ଫ୍ଲାସ୍ ବଢ଼େଇଦେଲା) (ପ୍ରତାପ ସେଥିରୁ ଚ ଢ଼ାଳି ପିଇଲା)

ପ୍ରତାପ ଦେଶର ସ୍ୱାଧିନତା ଆଉ ବିଭାଜନ ପୂର୍ବରୁ ଏଠି ନା ଥିଲା ତାରବାଡ଼ ନା ଥିଲା ସୈନ୍ୟଛାଉଣୀ? ଦୁଇ ଦେଶର ଲୋକେ ଭିନ୍ନ ଭିନ୍ନ ଦୁଇ ଗାଁରେ ରହୁଥିବା ଭାଇ ଭାଇ ଭଳି ଚଳୁଥିଲେ, ଜଣେଜଣକର ସୁଖରେ ଦୁଃଖରେ ଛିଡ଼ା ହେଉଥିଲେ। ଅଥଚ ଆଜି ସେମାନେ ପରସ୍ପରର ଶତୃ। ନିଜ ପଡୋଶୀଙ୍କ ଘରକୁ ମିଠା ପିଠାଇବା ପରିବର୍ତ୍ତେ ଗୁଳିଗୋଳା ପଠାଇବାକୁ ଆଗଭର ହେଉଛନ୍ତି।

ଜମାଲ ନା ନା ଲୋକେ ସେକଥା ଚହୁଁ ନାହାଁନ୍ତି। ବରଂ ଆମେ ସେମାନଙ୍କୁ ସେଥିପାଇଁ ବାଧ କରୁଛୁ। ଆମ ନେତାମାନେ ତାଙ୍କର ଭୋଟ୍ ପାଇଁ, ଦେଶ ଉପରେ ରାଜତ୍ୱ କରିବା ପାଇଁ, ଏମିତି ନାନା ପ୍ରକାର ମିଛସତ କହି ଯୁଦ୍ଧର ବାତାବରଣ ସୃଷ୍ଟି କରୁଛନ୍ତି। ଆଉ ଶତୃତାର ଦ୍ୱାହୀ ଦେଇ ଭୟପୈଦା କରୁଛନ୍ତି। ଅସଲ ମେ ଗରୀବ ଆମ ଆଦମୀ ଶାନ୍ତି ଚହାତା ହେ, ଦୋସ୍ତି ଚହାତା ହେ।

ପ୍ରତାପ ତମ ଦେଶର ସରକାର ଆଉ ସେନା, ଆତଙ୍କ ବାଦୀ ସୃଷ୍ଟି କରୁଛନ୍ତି କାହିଁକି ?

ଜମାଲ ସେ ସବୁ ରାଜନୀତିର ଖେଳ। ସେମାନେ ଭଲକରି ଜାଣିଛନ୍ତି ଯେ ସେମାନେ ଯେଉଁ ମାନଙ୍କୁ ଆତଙ୍କ ବାଦୀକା ଟ୍ରେନିଙ୍ଗ୍ ଦେକର ଆତଙ୍କବାଦୀ ବନାରହେଁ ହେ, ଓହିଲୋଗ ହମାରା ଦେଶମେ ଭି ଆତଙ୍କ ଫୈଲା ରହେଁ ହେ। ତୁମ ଦେଶର ୫ଜଣ ମଲେ ଆମ ଦେଶରେ ପ୍ରତିଦିନ ୨୫ଜଣ ମରୁଛନ୍ତି। ତୁମ ଦେଶରେ ଯେତିକି କ୍ଷତି ହେଉଛି ତାର ୧୦ ଗୁଣ କ୍ଷତି ଆମ ଦେଶରେ ହେଉଛି। ସେକଥା କ'ଣ ସେମାନେ ଜାଣୁ ନାହାଁନ୍ତି ?

ପ୍ରତାପ ହିନ୍ଦୁ ମୁସଲମାନର କଥା କହି କହି ଦେଶକୁ ଦୁଇଭାଗ କରାଗଲା। ଲକ୍ଷ ଲକ୍ଷ ଲୋକ ମଲେ। ଏବେ ଆତଙ୍କ ବାଦର ରାକ୍ଷସ ସୃଷ୍ଟି କରି ସାଧାରଣ ଲୋକଙ୍କ ମନରେ ଭୟ ଆଉ ଶତୃତା ସୃଷ୍ଟି କରୁଛନ୍ତି। କୋଟି କୋଟି ଟଙ୍କା ଖର୍ଚ୍ଚକରି ଆତଙ୍କବାଦୀଙ୍କୁ ଟ୍ରେନିଙ୍ଗ୍ ଦେଉଛନ୍ତି। ଆମଦେଶରେ ବିଶେଷକରି କାଶ୍ମୀରରେ ଆତଙ୍କ ବାଦ ଚଳେଇ ଧନଜୀବନ ନଷ୍ଟ କରୁଛନ୍ତି। ସେଥିରୁ କଣ ମିଳୁଛି ତାଙ୍କୁ ?

ଜମାଲ ବହୁତ କୁଛ ପାନେକା ସପନା ବନା ରହେ ହେଁ। ଅସଲ ମେ ସବକୁଛ ଖୋନାହି ପଡ଼ତା ହେଁ। ହମାରେ ଦେଶନେ ବେନଜୀର ଭୁଟ୍ଟୋ କୋ ଖୋୟା, ହଜାର ସିପାହୀ କାରଗିଲ ମେଁ ସହିଦ୍ ହୁଏ, ଦେଶକା ଅର୍ଥ ବ୍ୟବସ୍ଥା ହିଲସା ଗୟା ହେ। ପର୍‌ୟେ ସୁଧର୍‌ତେ ନେହିଁ ହେଁ। କ୍ୟୁଁକି ଆମ ଆଦମୀକା ଦୁଃଖ କା ସୀମା ଇନହେ ପତା ନେହି ଚଲତା।

ପ୍ରତାପ ନାନା, ତୁହ୍ମାରା ଦେଶ ଆତଙ୍କବାଦକୁ ରାଷ୍ଟ୍ରନୀତି ବିନାଲିୟା ହେ। କାରଣ ସେମାନେ ଜାଣନ୍ତି ଯେ ଯୁଦ୍ଧକରି ଭାରତ ପାଖରୁ କାଶ୍ମୀରକୁ ଛଡ଼େଇ ନେଇ ହେବନାହିଁ। ତେଣୁ ଛାୟା ଯୁଦ୍ଧ କରି କାଶ୍ମୀର ହାତେଇବା ତାଙ୍କର ଲକ୍ଷ୍ୟ। ଯାହା ଆମେ କେବେବି କରାଇଦେବୁ ନାହିଁ।

ଜମାଲ ଆତଙ୍କ ବାଦ ଐସା ଏକ ରାକ୍ଷସ ହେ ଜିସ୍‌କୋ ରକ୍ତ କି ହୋରି ଖେଲନା ପସନ୍ଦ ହେ- ଭାରତ ମେଁ ନେହିଁ ତୋ ଅପନା ଦେଶମେ ହିଁ ସହି। ଦୋ ନୋ ଦେଶକି ଲୋକ ତୋ ଏକ ଜୈସା ହିଁ ହୈ। ହିନ୍ଦୁ ହେଉବା ମୁସଲମାନ ଫରକ୍ ନେହିଁ ପଡତା..

ପ୍ରତାପ ଦୁଇ ଦେଶର ଜନତା ଚାହିଁଲେ ସରକାର ଶାନ୍ତିପାଇଁ ବାଧ୍ୟ ହୁଅନ୍ତେ। ଦୁଇ ଦେଶ ମଧ୍ୟରେ ବିଶ୍ୱାସ ଫେରି ଆସନ୍ତା।

ଜମାଲ ଆଉ ଏ ତାର ବାଡ଼ ବି ଉଠିଯାଆନ୍ତା।

(ଏତିକି ବେଳେ ଦୂରରେ ହୁଇସିଲର ଶବ୍ଦ ଶୁଭିଲା ଦୁହେଁ ଭିନ୍ନ ଦିଗକୁ ଯିବାକୁ ଚାହିଁଲେ)

ପ୍ରତାପ ଚା ପାଇଁ ଧନ୍ୟବାଦ। ଖୁବ୍ ବଢ଼ିଆ ଚା, ପୁଣି କେବେ ଦେଖାହେଲେ ଚା ପିଇବା।

ଜମାଲ ଦୋନୋ ଦେଶକେ ଆମ ଆଦମୀ କେ ଦୋସ୍ତିକେ ନାମସେ, ଅଗଲିବାର ତୁହ୍ମାରା ଚା ଔର ମେରା ପ୍ୟାସ (ହସିଲେ) ଖୁଦା ହାଫିସ୍... (ଦୁହିଙ୍କର ପସ୍ଥାନ)

## ଦ୍ୱିତୀୟ ଦୃଶ୍ୟ

( ସମୟ ରାତ୍ରୀ, ସମାନ ସ୍ଥାନ) (ଦୁହେଁ ଦୁଇ ପଟେ ଗ୍ରସ୍ତ କରୁଛନ୍ତି)

ଜମାଲ ସଲାମ ଆଲେକୁମ୍ - ଦୋସ୍ତ'

ପ୍ରତାପ ଆଜି ତୁମର ମହରମ୍ ପାଳନ ହେଉଛି, ମହରମର ଶୁଭେଚ୍ଛା ଦୋସ୍ତ।

ଜମାଲ ଆପକୁଭି ଦଶହରା କୀ ଶୁଭ କାମନାଏଁ - ମେରେ ଔର ମେରେ ପରିବାର କି ତରଫ୍ ସେ।

ପ୍ରତାପ ଚା ପିଇବା।

ଜମାଲ ଉସସେ ପେହେଲେ - ଏ ମିଠାଇକା ପ୍ୟାକେଟ୍ ମେରେ ତରଫ୍‌ସେ ଆପକେ ପରିବାର ଔର ଦୋସ୍ତ ଲୋଗୋଓକାଲିଏ।

ପ୍ରତାପ କିସ୍ ଖୁସିମେଁ। ଦଶହରା ପାଇଁ ନା ମହରମ ପାଇଁ।

ଜମାଲ ନେହିଁ ଦୋସ୍ତ,ମେରି ବଡ଼ୀ ବେଟୀକା ନିକ୍ୱା ହୋ ଗୟାହେ, ଉସି ଖୁସିମେଁ। ସାଦୀମେଁ ଆପକେ ପରବାର ବାଲୋଁ ସବ୍‌କୋ ଲେକର ଆନା।

ପ୍ରତାପ ତୁମର ବେଟୀ କେତେ ବଡ଼ ହୋଇଗଲାଣି ଯେ ତାକୁ ବାହାଦେବାକୁ ଠିକ୍ କଲଣି ? କଣ ପଢ଼ିଛି ? ତାର ବୟସ କେତେ ?

ଜମାଲ ବଡୀକାହାଁ ହୁଆହେ ଦୋସ୍ତ, ବସ୍ ବଡୀ ହୋଗୟୀ ହେ। ଉମର୍ ଷୋହଳ ସାଲ।

ପ୍ରତାପ ବାସ୍ ? ଇତନେ କମ୍ ଉମର ମେ ଉସକା ସାଦୀ ମତ କରାଅ ଦୋସ୍ତ । ସେତ ଏବେ ବି ନାବାଳିକା ଅଛି। ତାକୁ ସାବାଳକ ହେବାକୁ ଦିଅ, ପାଠ ପଢ଼ାଅ, ବୟସ କୋଡ଼ିଏ ବର୍ଷ ହେଉ। ଆମର ଦେଶରେ ନାବାଳିକା ବିବାହ ଏକ ଦଣ୍ଡନୀୟ ଅପରାଧ।

ଜମାଲ ହମାରେ ଦେଶ ୟା ଧର୍ମ, ଇସସେ ନେହିଁ ମାନତି। ବେଟୀ ବଡୀ ହୋକର ସାଦୀକା ଲାୟକ ହୋ ଯାଏ, ତୋ ଫିର୍ ସାଦି କରାଦେତେ ହେଁ। ନେହିଁ ତୋ ଆଗେ ଯାକର ପ୍ୟାର ବ୍ୟାର କେ ଚକ୍‌ର ମେଁ ଆଗୟୀ ତୋ ଫିର୍ ବିରାସତ ମେଁ ମେରା ଜୀନା ହାରାମ ହୋ ଯାଏଗା।

ପ୍ରତାପ ତାକୁ ପାଠ ଶାଠ ନପଢ଼େଇ, ସାବାଳକ ନ କରାଇ, ସମାଜରେ ଚଳିବା ଲାୟକ ନ କରାଇ, ସାଦି କରାଇ ଦେଉଛ ? କିନ୍ତୁ ଭଗବାନ ନକରନ୍ତୁ ବାଇଚାନ୍ସ ତାର କିଛି ଅସୁବିଧା ହୋଇଗଲାତ ? ସାରାଜୀବନ ସେ ମୁସିବତରେ କଟାଇବାକୁ ବାଧ୍ୟ ହେବ ଯେ।

ଜମାଲ ସୋତୋ ହେ। ମଗର କ୍ୟା କରେଁ, ଆଲ୍ଲାହ କି ମର୍ଜି।

ପ୍ରତାପ ନିଜ ମର୍ଜିରେ ବାହାଘର କରୁଛ, ଅଥଚ ଆଲ୍ଲାହଙ୍କ ଉପରେ ଦୋଷଲଦି ଦେଉଛ ? ଏହାତ ଅଛି ବାତ୍ ନେହିଁହେ ଦୋସ୍ତ'।

ଜମାଲ କ୍ୟା କରେଁ। ଘର ପରିବାର ତୋ ଓ୍ୱହି ଚାହେତେ ହେଁ।

ପ୍ରତାପ ଘର ପରିବାର କୋ ସମଝନା ଚାହିଏ ଥା...

ଜମାଲ ଛୋଡୋ ୟେ ବାତ୍ । ହାମାରା ପରିବାର ଚାହତା ହେ କି ବେଟି କେ ସାଦି ମେ ତୁମ୍ଭାରା ପରିବାର ହାମାରେ ଘର ଆୟେ ଔର ହାମାରେ ସାଥ୍ ଖୁସି ମନାୟେ।

ପ୍ରତାପ ଆମ ପରିବାରଙ୍କର ବି ସେଇ ଇଚ୍ଛା ତୁମ ଦେଶ ବୁଲିଯାଆନ୍ତେ, ସେ ଦେଶରେ ଥିବା ହିନ୍ଦୁ ମନ୍ଦିର, ଧର୍ମସ୍ଥାନ ସବୁ ବୁଲି ଦେଖନ୍ତେ। କିନ୍ତୁ ସେମାନେ ଜାଣନ୍ତି ନାହିଁ ଯେ ଦୁଇଦେଶ ମଧ୍ୟରେ ଏକ ସୀମାନ୍ତ ଅଛି। ସେ ଦେଶକୁ ଯିବାକୁ ହେଲେ ତାରବାଡ଼ ଡେଇଁ ଯିବାକୁ ପଡ଼ିବ।

ଜମାଲ ଆଉ ସେଥିପାଇଁ Passport, Visa ଲେନା ଜରୁରୀ ହେ। ସରକାରଙ୍କ ଆଦେଶ ନାମା ଲେନା ଜରୁରୀ ହୋତା ହେ। ଓହ ଇତନା ସୁବିଧା ବାତ୍ ନେହିଁ ହେ...

ପ୍ରତାପ ସେମାନେ ଭାବନ୍ତି ଗାଁରେ ମେଳା ଦେଖିବାକୁ ଗୋଟିଏ ଗାଁରୁ ଅନ୍ୟ ଗାଁକୁ ଯିବା ଭଳି ଘଟଣା ବୋଧହୁଏ ଇଏ।

ଜମାଲ ଐସା ହୋନେସେ କିତ୍‌ନା ଆଛା ହୋତା। ସୋଚ୍ଚେ ତୋ ଦୋସ୍ତ! ଦୋନୋ ଦେଶ କେ ଲୋକ ଦୋସ୍ତ କେ ତରହା ଆନା ଜାନା କରତେ। ବିଚମେ ତାରକା ସୀମା ହୋତା । ନା ବଂଧୁକ ପକଡ଼କେ ହମ୍ ୟହାଁ ଖଡ଼େ ହୋତେ।

ପ୍ରତାପ ସେମିତି ତ ଥିଲା ସ୍ୱାଧିନତା ପୂର୍ବରୁ ଆଉ ପରେ ମଧ ବେଶ୍ କିଛି କାଳ । କିନ୍ତୁ ରହିଲା ନାହିଁ। କାରଣ ତମରି ପଟୁ ଆରମ୍ଭ ହେଲା ଜାଲ୍‌ନୋଟ୍, ଅଫିମ ଆଉ ଡ୍ରଗ୍‌ସର ଚ୍ଚୋରା କାରବାର, ତାପରେ ଆତଙ୍କ ବାଦ। ସେଥିପାଇଁ ସରକାର ବାଧ ହୋଇ ତାରବାଡ଼ କଲେ। ପହରା ଦେଲେ। ତଥାପି ସେମାନଙ୍କୁ ସଂମ୍ପୂର୍ଣ୍ଣ ରୋକିବା ସମ୍ଭବ ହୋଇପାରୁନି। କାରଣ କେଉଁଠି ତାରବାଡ଼ କାଟି ପଶିଲେଣି ତ କେଉଁଠି ସୁଡଙ୍ଗ କରି ପଶିଲେଣି। ଆଗେ ନିଶାକାରବାର କରୁଥିଲେ ଏବେ ଅସ୍ତ୍ରଶସ୍ତ୍ର, ଆତଙ୍କବାଦି ଚ୍ଚଲାଣ ହେଲେଣି। ଏବେ ତ ସମସ୍ୟା ଆହୁରୀ ବେଶି।

ଜମାଲ ଛୋଡ୍ ୟାର୍ / ହମ୍ ସିର୍ଫ ସୋଚ୍ ସକତେ ହେଁ। କୁଛ୍ ନେହିଁ କର୍‌ସକତେ, କ୍ୟୁଁକି ସରକାର୍ ଜୋ ଚ୍ଚହତା ହେ ଐହି କରତା ହେ। ଐର ସରକାର କୋ ଯୋ ଚଲାତେ ହେଁ ଓ ଆମଆଦମୀ ନେହିଁ ହୋତେ ହେଁ।

(ପୁଣି ହୁସିଲ୍ ବାଜିଲା, ପ୍ରତାପ ହୁଇସିଲ୍ ମାରି ଆଗେଇଲା ଜମାଲ ଅନ୍ୟଦିଗରେ ଗଲା ...କିଛିବାଟ ଯାଇ ପ୍ରତାପ ଅନ୍ୟ ସିପାହି ସହ କଥାବାର୍ତ୍ତା ହେଲା।)

ପ୍ରତାପ କ'ଣ ହେଲା ?

ରାକେଶ ଆରପଟ Cheak post tower ର ପାଖାପାଖି କିଛି ଛାଇ ର ଗତି ବିଧି ଜଣାପଡୁଛି।

ପ୍ରତାପ କେମିତି ଜାଣିଲୁ ?

ରାକେଶ Binocular ରେ ଦେଖୁଥିଲି। ୨/୩ ଟା ଛାଇ ଯିବା ଆସିବା କରୁଛନ୍ତି।

ପ୍ରତାପ ସୁଡଙ୍ଗ ଖୋଳୁନାହାଁନ୍ତି ତ ?

ରାକେଶ ହୋଇଥିବ !

ପ୍ରତାପ ଭଲକରି obserb କରିବା ଦରକାର। କାଳେ ଜନ୍ତୁ ଜୁନ୍ତା ହୋଇଥିବେ ?

ରାକେଶ୍ ମତେ ତ ମଣିଷ ଭଳିଆ ଲାଗୁଛି। ମୁଁ ଭାବୁଛି ଆଉ ଡେରିନକରି ଉପର ଅଫିସରଙ୍କୁ ଜଣାଇଦେବା ଉଚିତ୍।

ପ୍ରତାପ ଏତେ ବ୍ୟସ୍ତ ହଉଚୁ କାହିଁକି ? ଆଗେ ଆମେ conform ହୋଇସାରୁ। କେତେ ଦୂରରେ ସେମାନେ ଅଛନ୍ତି ?

ରାକେଶ 2/3 K.m ହବ। କୁହୁଡ଼ି ଅଛିତ ? ଭଲଭାବରେ ଦେଖା ଯାଉନାହିଁ।

ପ୍ରତାପ ହଉ ହଉ ଚାଲ ଚାଲ। ଦେଖିବା (ଦୁହେଁ ପ୍ରସ୍ଥାନ)

ସିପାହୀ (ପ୍ରବେଶ କରି ଦେଖିଲା କେହିନାହିଁ) ଏଠି ତ କେହି କୁଆଡେ ନାହିଁ। (ବସିପଡ଼ିଲା) (ତାପରେ ବନ୍ଧୁକକୁ ଧରି ପଥର ଉପରେ ଫାୟାରିଂ କଲାଭଳି ପେଟେଇ ଶୋଇଲା ଓ ଶୋଉ ଶୋଉ ଶୋଇ ପଡ଼ିଲା। ଦୂରରୁ ଘୋଡ଼ାଟାପୁର ଶବ୍ଦ ଶୁଭିଲା ଦେଖାଗଲା ଏକ ଛାୟା ମୂର୍ତ୍ତି ଆସି ସିପାହିକୁ ବାଡ଼େଇ ଉଠାଇଲା)

ସର୍ଦ୍ଦାରଙ୍କ ଛାୟା : ତୋ ଉପରେ ସାରାଦେଶର ସୁରକ୍ଷା ନିର୍ଭର କରୁଛି, ଅଥଚ ତୁ ଶୋଇପଡୁଛୁ। (ଚଟକଣି ମାରିଲା) (ହାଉଳି ଖାଇ ସିପାହି ଉଠିପଡ଼ିଲା)

ସିପାହୀ କିଏ ମତେ ବାଡ଼େଇଲା ?

(ବଂଧୁକ ଧରି ତା ଉପରକୁ ୨/୩ଟି ଗୁଳ ଫୁଟାଇଲା।ଅନ୍ୟମାନେ ଧାଇଁ ଆସିଲେ)

ପ୍ରତାପ କ'ଣ ହେଲା ? ଗୁଳି କାହାକୁ ମାରିଲୁ ?

ସିପାହୀ କିଏ ମତେ ଗୋଟେ ଚଟକଣା ମାରିଲା ସାର୍। ସେଇ ହୋସ୍‌ରେ ହାଉଳିଖାଇ ୨/୩ଟା ଗୁଳିଫୁଟେଇ ଦେଲି । ସାର୍।

ରାକେଶ ତୁ ଶୋଇପଡ଼ିଥିଲୁ କି ?

ସିପାହୀ ଶୋଇନି, ଟିକେ ଆଖିଲାଗିଯାଇଥିଲା।

ପ୍ରତାପ ସେଇଥି ପାଇଁ ସପନ ଦେଖି ମିଛଟାରେ ୨/୩ଟା ଗୁଳିଫୁଟେଇ ଦେଲୁ ନୁହେଁ।

ରାକେଶ ଜାଣିଛଟି ପ୍ରତାପ ଭାଇ ! ଏଇଟା Cheak post ରେ Duty କଲାବେଳେ , ଟ୍ରିଗାର୍‌ରେ ଦୌଡ଼ିବାନ୍ଧି ନିଜ ପାଦ ଆଙ୍ଗୁଠିରେ ବାନ୍ଧିଦେଇ ଶୋଇପଡ଼େ। ମଝିରେ ମଝିରେ ନିଦରେ ପାଦ ହଲିଗଲେ ଆପେ ଆପେ ଗୁଳି ଫୁଟୁଥାଏ।

ସିପାହୀ ରାତିରେ ଯଦି ଚୋର ତସ୍କର ସୀମାଡେଇଁ ଆସିବାକୁ ଚେଷ୍ଟାକରୁ ଥିବେ। ତାହେଲେ ଗୁଳିଶବ୍ଦ ଶୁଣି ଦୌଡ଼ିପଳାଇବେ। ବୁଝିଲୁ।

ପ୍ରତାପ କଂସାରୀଘର ପାରାକୁ କୁଳା ଢ଼ାଉଁ ଢ଼ାଉଁ କଲେ, ସେ କ'ଣ ଉଡ଼ିଯିବ ଭାବୁଛୁ? ସେମାନେ ପରା ଆତଙ୍କବାଦୀ। ସିଏ ପରା ଜୀବନକୁ ପାଣି ଛଡ଼େଇ କମାଣ ଗୁଳିକୁ ଖାତିର କରୁନାହାଁନ୍ତି। ସେମାନେ ତୋ ବନ୍ଧୁକ ଗୁଳିକୁ ଡରିବେ।

ରାକେଶ ଆବେ ମିଛୁଆରାଧୁଆ ଗପ ପଢ଼ିଛୁ? ସବୁଦିନ ରାତିରେ ମିଛରେ ମିଛରେ ଗୁଳି ଫୁଟାଉ ଥାଆ, ଅସଲବେଳକୁ ଫସର ଫାଟିଯିବ ଯେ ବୁଝିବୁ।

ସିପାହୀ ଅସଲକଥା କ'ଣ କି ଭାଇ ! ବଂଧୁକର position ନଉନଉ ଶୋଉ ଶୋଉ ଶୋଇପଡ଼ିଲି ଯେ, ଛାଇନିଦ ଲାଗିଯାଇଥିଲା। ହଠାତ୍ ମତେ ଘୋଡାଟାପୁର ଶବ୍ଦ ଶୁଭିଲା, ଆଉ ଦେଖିଲି ଜଣେ ସିପାହି ସର୍ଦ୍ଦାର ଘୋଡାରୁ ଓହ୍ଲେଇ ଆସିଲେ ଆଉ କହିଲେ ...

ପ୍ରତାପ " Duty କରୁଛୁ ନା ଘୁମାଉଛି" ତୋ ଗାଲରେ ଚଟ୍‌କଣି ବାଜିଥିବ ନିଶ୍ଚୟ। (ହସିଲେ)

ସିପାହି ସତ କହୁଛନ୍ତି ସାର୍। ହେଲେ ଏକଥା ଆପଣ ଜାଣିଲେ କେମିତି ?

ପ୍ରତାପ ଏଇଟା କେଉଁମାସ ?

ରାକେଶ February,

ସିପାହୀ ମାସରୁ କ'ଣ ମିଳିବ ?

ପ୍ରତାପ ତୁ ଜାଣିନୁ ? Chaina ବୋର୍ଡରେ କେବେ Duty ପଡ଼ିଛି ?

ସିପାହୀ ନା...

ପ୍ରତାପ ସିକିମ୍‌ର ରାଜଧାନୀ ଗ୍ୟାଙ୍ଗ୍‌ଟକ୍‌ରୁ ଚଇନା Boarder କୁ ରାସ୍ତା... ସେଇ Boarderକୁ Zero point କହନ୍ତି, ସେଇଠି Base camp ପାଖରେ ବାବା ମନ୍ଦିର ଅଛି । ସେଇ ମନ୍ଦିରଟା ହରଭଜନ ସିଂଙ୍କ ସ୍ମୃତି ରେ ନିର୍ମାଣ କରାଯାଇଛି ।

ସିପାହି ସିଏ କିଏ ?

ପ୍ରତାପ ତାଙ୍କ ଘର ଏଇ ପଞ୍ଜାବରେ, ସେଇ ଚଇନା Boarderରେ Duty କରିବା ସମୟରେ ତାଙ୍କର ପ୍ରାଣତ୍ୟାଗ ହୋଇଥିଲା । ଆଜି ପର୍ଯ୍ୟନ୍ତ ତାଙ୍କର Deadbody ମିଳିନାହିଁ । କିନ୍ତୁ ସେଠି ଏବେବି ତାଙ୍କର ଆତ୍ମା ସୀମାନ୍ତରେ ଅନବରତ ପହରା ଦେଉଛି । ସେଠିDuty ରେ ଥିବା ସିପାହୀ Dutyରେ ଘୁମେଇଲେ ସେ ଆସି ଏମିତି ଚଟକଣୀ ମାରି ଉଠାଇ ଦିଅନ୍ତି । ଏବେ ଦୁଇମାସ ସେ ଛୁଟିରେ ତାଙ୍କ ଘର ପଞ୍ଜାବ ଆସିଥିବେ । ତେଣୁ ଛୁଟିରେ ଥାଇ ବି ସେ ଏତେ କର୍ତ୍ତବ୍ୟନିଷ୍ଠ ଯେ ତୋତେ ଚଟ୍‌କଣି ମାରି ଶିକ୍ଷା ଦେଲେ ଆଉ ଯେମିତି କେବେ ଭୁଲ୍ ନ କରୁ ।

(ଫ୍ଲାସ୍‌ବେକ୍ ,ଘୋଡ଼ା ଟାପୁର ଶବ୍ଦ କ୍ରମେ ନିକଟତର ହେଲା, ଘୋଡ଼ା ରହିଲା । ଜଣେ ସର୍ଦ୍ଦାର ଆସି ସିପାହୀକୁ ଚଟକଣି ମାରିଲେ)

ସର୍ଦ୍ଦାର ଆରେ ପୁତ୍ତର ! ଡ୍ୟିଉଟି ପେ ଶୋ ରହେହେ । ନାଲାୟକ୍ କାହିଁକା ।

ସିପାହୀ ସତରେ ମୁଁ ଖୁବ୍ ଦୁଃଖିତ, ଲଜ୍ଜିତ ....ଜୀବନରେ ଆଉ ଏମିତି ଭୁଲ୍ କେବେ ବି କରିବି ନାହିଁ ।

ସର୍ଦ୍ଦାର ସାବାସ୍, ବନ୍ଦେ ମାତରମ୍ , ଜୟହୀନ୍ଦ୍ ।

ସିପାହୀ (ଚମକି ଉଠି ଗାଲକୁ ଆଉଁସି ଦେଲା) ଆରେ ବାପ୍‌ରେ ବାପ ! ସିଏ କି ଚଟକଣି ! ଜୀବନରେ କେବେ ଭୂଲିହେବନି (ସମସ୍ତେ ହସିଲେ)

ପ୍ରତାମ ଆଛା, ଆଛା ତୁ ସେ ପଟେ ଯା, ଆଉ ତୁ ଏପଟେ ।

(ଦୁହେଁ ଚାଲିଗଲେ ପ୍ରତାପ Binacular ନେଇ ଦେଖୁଛି ଓ walkitalkiରେ କାହାକୁ ନିର୍ଦ୍ଦେଶ ଦେଉଛି)

ପ୍ରତାପ Helo, Helo ସୀମାସେପଟେ କିଛି ଗତିବିଧି ଦେଖାଯାଉଛି । ନିଜେ ସାବଧାନ ରୁହ ଓ ଅନ୍ୟ ମାନଙ୍କୁସାବଧାନ କରିଦିଅ । Helo, Helo Batalian ,ସର୍କେଣ୍ଟ 344 Reporting ସୀମା ଆରପଟେ ଗତିବିଧି ଲାଗିରହିଛି,Ready for Action Sir! ଆମେ Ready ଅଛୁ । order ପାଇଲେ Firingକରିବୁ । yes sir, We will wait till they fire First, ok sir!

(ଅନ୍ଧାର ହେଲା ତାହାରି ଭିତରେ ଗୁଳିଗୋଳାର ଶବ୍ଦ ଭାସି ଆସିଲା)

ଟେଲିଭିଜନ୍‌ର ସଂବାଦ : କାଲି ରାତିରେ ପଞ୍ଜାବର ସୀମାରେ ପାକିସ୍ଥାନୀ ସୈନ୍ୟ ଅତର୍କିତ ଆକ୍ରମଣ କରିଛନ୍ତି। ଭାରତୀୟ ସୈନ୍ୟ ବାହିନିର ପ୍ରତି ଆକ୍ରମଣରେ ଅପର ପକ୍ଷରେ ଭାରୀ କ୍ଷତି ସହିବାକୁ ପଡ଼ିଛି। ତେବେ ସୀମାନ୍ତ ଅତ୍ୟନ୍ତ ସ୍ପର୍ଶକାତର ରହିଥିବା ସଙ୍ଗେସଙ୍ଗେ ପରିସ୍ଥିତି ଉତ୍ତେଜନା ପୂର୍ଣ୍ଣ ରହିଚି। କେବଳ ସେତିକି ନୁହେଁ, ଉଭୟ ପଟରେ ଯୁଦ୍ଧ ଭଳି ପରିସ୍ଥିତି ସୃଷ୍ଟି ହୋଇଛି। (ପୁଣି Firing ଓ କୋଳାହଳ)

ଘୋଷଣା ୧ ଗତ କେତେଦିନ ଧରି ସୀମାନ୍ତରେ ଘମାଘୋଟ Firing ପରେ ଆଜି ସକାଳେ ଦୁଇପକ୍ଷରେ Flage ବୈଠକ ବସିଥିଲା।

୨ : ଏଇ ମାତ୍ର ଖବରରୁ ପ୍ରକାଶ ଯେ, Flage ବୈଠକରେ ସେଭଳି ସୁଫଳ କିଛି ମିଳିପାରି ନାହିଁ। ଉଭୟ ପକ୍ଷରୁ ଆରୋପ ପ୍ରତ୍ୟାରୋପ ମଧ୍ୟରେ ବୈଠକ ଶେଷ ହୋଇଛି।

୩ : ଆଲୋଚନା ଜାରିରହିବ କି ନାହିଁ କିଛି ଜଣାନାହିଁ।

୪: ଏପରି ସ୍ଥଳେ ଯୁଦ୍ଧର ସମ୍ଭାବନା କୁ ଏଡ଼େଇ ଦିଆଯାଇ ନପାରେ।

## ତୃତୀୟ ଦୃଶ୍ୟ

(ଦେଖା ଗଲା ପାକିସ୍ତାନ T.Vରେ ପାକ୍ ପ୍ରଧାନମନ୍ତ୍ରୀ ଙ୍କ ଭାଷଣ)

ପାକିସ୍ତାନ ପ୍ରଧାନ ମନ୍ତ୍ରୀ ଭାଇମାନେ ବିନା କାରଣରେ ଭାରତ ଆମ ଉପରେ ଗୁଳି ଗୋଳାବର୍ଷଣ କରି ଚାଲିଛି। ଆମର ସମସ୍ତ ଉଦ୍ୟମସତ୍ତ୍ୱେ ସେମାନେ ଆମକୁ ଯୁଦ୍ଧ କରିବାକୁ ବାଧ କରୁଛନ୍ତି। ଆମର ସୈନ୍ୟବାହିନୀଙ୍କୁ ଶେଷ ଚେତାବନୀ ଶୁଣାଇଦଉଛି ଆସନ୍ତା ୯ ଘଣ୍ଟା ମଧ୍ୟରେ ସେମାନଙ୍କ ପଟରୁ ଗୁଳିଗୋଳା ବନ୍ଦ ନହେଲେ ଇନ୍‌ସାଆଲ୍ଲା ଆମେ ଯୁଦ୍ଧ କରବାକୁ ବାଧହେବୁ। ପାକିସ୍ତାନ ଜିନ୍ଦାବାଦ୍।

ଭାରତ ପ୍ରଧାନମନ୍ତ୍ରୀ ଭାଇ ଓ ଭଉଣୀ ମାନେ! ପାକିସ୍ତାନର ଯୁଦ୍ଧଖୋର ମନୋଭାବ ପାଇଁ ଆଜି ପୁଣି ଥରେ ଉଭୟ ଦେଶମଧ୍ୟରେ ଯୁଦ୍ଧ ହବାର ସ୍ଥିତି ଆସି ପହଞ୍ଚି ଯାଇଛି। ନିଜେ ଯୁଦ୍ଧ ବିରତି ସୀମା ଉଲଙ୍ଘନ କରି ଅନବରତ ମୋଟର ଆଉ ସେମିନ୍ ଗନ୍ ସାହାଯ୍ୟରେ ଆମର ସେନା ଛାଉଣୀ ଓ ସୀମାନ୍ତରେ ଥିବା ଗ୍ରାମ ଗୁଡ଼ିକ ଉପରେ ଆକ୍ରମଣ କରି ଧନ ଜୀବନ ନଷ୍ଟ କରିବାର ପ୍ରୟାସ କରୁଛି। ଅଥଚ ଆମକୁ ଗୁଳିବନ୍ଦ କରିବାର ୯ଘଣ୍ଟାର ସମୟ ସୀମା ଦେଇଛି। ସାରା ବିଶ୍ୱ ଜାଣିଛି ଭାରତ ଏକ ଶାନ୍ତି ପ୍ରିୟ ଦେଶ। ଦୁଇ ଦେଶ ମଧ୍ୟରେ ଯେତେଥର ଯୁଦ୍ଧ ହୋଇଛି ସେତେଥର ପାକିସ୍ତାନ ହିଁ ଯୁଦ୍ଧ ଆରମ୍ଭ କରିଛି ଓ ପରାସ୍ତ ହୋଇଛି। ଆମେ ଯୁଦ୍ଧ ଚାହୁଁନା,ଶାନ୍ତି ଚାହୁଁ। କିନ୍ତୁ ଆମକୁ ଯଦି କେହି ଆକ୍ରମଣ କରେ ତେବେ ଆତ୍ମରକ୍ଷା ପାଇଁ ଆମେ ମଧ୍ୟ ଯୁଦ୍ଧ କରିବାକୁ ବାଧ ହେବୁ। ସେପରି ସ୍ଥିତିରେ ଉଭୟ ଦେଶର ଯାହାକିଛି ଧନ ଜୀବନ ହାନି ହବ ସେଥିପାଇଁ ନୈତିକ ଭାବେ ଉତ୍ତରଦାୟୀ ରହିବ ପାକିସ୍ତାନ, ଆମେ ନୁହେଁ। ବନ୍ଦେ ମା ତରମ୍।

# ଚତୁର୍ଥ ଦୃଶ୍ୟ

(ସୈନ୍ୟ ଅଭ୍ୟାସ ଚାଲିବ ଟ୍ୟାଂକ, ବିମାନ ଆଦିର ଗତିବିଧି ଲାଇଫ୍‌ରେ କିମ୍ବା ଭିଡ଼ିଓରେ ଦେଖାଯାଇପାରେ। ଦୁଇପଟରେ ଯୁଦ୍ଧ ସଂଗୀତ ବାଜିଲା। ମାର୍ଚ୍ଚିଂ ଚାଲିଲା। ଗୁଳିଗୋଳା ଆରମ୍ଭ ହେଲା। ଦୁଇପକ୍ଷରୁ ଅନେକ ହାତାହତ ହେଲେ lcycloroma ରେ କୌଣସି ଏକ ଯୁଦ୍ଧର ଦୃଶ୍ୟ ର V.D.O Projector ରେ ଦେଖାଯାଇ ପାରେ। ତାପରେ ଯୁଦ୍ଧପରର ଦୃଶ୍ୟ)

# ପଞ୍ଚମ ଦୃଶ୍ୟ

( ପ୍ରଥମ ଦୃଶ୍ୟରେ ବର୍ଣ୍ଣିତ ପୂର୍ବୋକ୍ତ ସ୍ଥାନରେ ତାରବାଡ଼ ଭାଙ୍ଗି ଯାଇଛି। ଶବମାନେ ପଡ଼ିରହିଛନ୍ତି। ଶବ ମାନଙ୍କ ଭିତରୁ ଆତ୍ମାସବୁ ଉଠିଆସି ପ୍ରେତରୂପରେ ଏକତ୍ର ହୋଇଛନ୍ତି। ତା'ମଧ୍ୟରେ ପ୍ରତାପ, ଜମାଲ, ରାକେଶ ଆଦି ମଧ୍ୟ ଅଛନ୍ତି)

ଜମାଲ — ଯୁଦ୍ଧ ସରିଗଲା ଦୋସ୍ତ ! ଦୁଇ ପକ୍ଷରୁ କେତେ ମଲେ କେତେ ହଜିଲେ। କେତେ ଖଣ୍ଡିଆଖାବରା ହେଲେ, ପଙ୍ଗୁହୋଇଗଲେ ଅକର୍ମଣ୍ୟ ହୋଇଗଲେ, ତାର ହିସାବ ଖୋଜା ଚାଲିଛି।

ଜମାଲ — ହେଲେ ହାର୍‌ଜିତି କା ଫୈସଲା କ୍ୟା ହୁଆ ? କୋନ୍ ଜିତା କୋନ୍ ହାରା ?

ପ୍ରତାପ — ଯିଏ ଜିତୁ କି ହାରୁ। ହେଲେ କେତେ କେତେ ଅମୂଲ୍ୟଜୀବନ ହରାଇଛନ୍ତି ସମସ୍ତେ। କୋଟି କୋଟି ଟଙ୍କାର ସମ୍ପତ୍ତି ଜଳି ପାଉଁଶ ହୋଇଯାଇଛି। ଶସ୍ୟ କ୍ଷେତ ଉଜୁଡ଼ି ଯାଇଛି। ଅଙ୍ଗପ୍ରତ୍ୟଙ୍ଗ ହରାଇ ଅନେକ ଅକର୍ମଣ୍ୟ ହୋଇଯାଇଛନ୍ତି। ସେମାନଙ୍କର ସେଇ ହଜିଲା ଧନ, ଜୀବନ, ଅଙ୍ଗ ପ୍ରତ୍ୟଙ୍ଗ ଫେରାଇବ କିଏ ? ଦେଶର ସରକାର ନା ସେନାବାହିନୀ ?

ଜମାଲ — ନେତାମାନେ ଜସ୍ନ ମନାରହେ ହୋଙ୍ଗେ। (ନେପଥ୍ୟରୁ ସ୍ତ୍ରୀଲୋକ ମାନଙ୍କର କାନ୍ଦ ଓ ପିଲାମାନଙ୍କର ଚିତ୍କାର)

ପ୍ରତାପ — ମୃତ ସେନା, ମୃତ ନାଗରୀକଙ୍କ ଘରେ ଚୁଲି ଜଳିନଥିବ। ନାରୀ ଆଉ ଶିଶୁମାନେ ମୁଣ୍ଡବାଡ଼େଇ କାନ୍ଦୁଥିବେ। ତାଙ୍କର ସେ ଦୁଃଖ ହରିବ କିଏ ? କିଏ ତାଙ୍କୁ ସାନ୍ତ୍ୱନା ଦବ ?

ଜମାଲ — ହମ୍ ଦେଙ୍ଗେ। ହମ୍ ଘର୍‌ଘର୍ ଯାଏଙ୍ଗ, ଉନ୍‌କୋ ତସଲ୍ଲି ଦେଙ୍ଗେ।

ରାକେଶ — ଆମେ ତ ପ୍ରେତ ହୋଇ ସାରିଛେ। ଆମେ କ'ଣ କିଛି କରିପାରିବା।

ପ୍ରତାପ — ଜମାଲ୍‌ଭାଇ ଠିକ୍ କହିଛି। ଆମେ ଏବେ ଜିବିତ ନୁହେଁ ମୃତ। ଆମ ପାଇଁ ଏ ତାରବାଡ଼ର ଅର୍ଥ କିଛି ନାହିଁ।

ରାକେଶ — ତାରବାଡ଼ ଆମକୁ ଆଉ ଅଟକେଇ ରଖି ପାରିବ ନାହିଁ।

ଜମାଲ — ଜାତି, ଧର୍ମ କେ ନାମ ପର୍ ହମ୍‌କୋ କୋଇ ରୋକ୍‌ନେଇ ପାଏଗା।

ପ୍ରତାପ — କୌଣସି ଦେଶ ର ସୀମା ଓ ସୀମାନ୍ତ ମଧ୍ୟ ଆମକୁ ରୋକି ପାରିବ ନାହିଁ।

ଜମାଲ — ହାମ୍ ସବ୍ ସୀମା ସରହଦ୍ ତୋଡ଼୍‌କେ ଅବ୍ ଆଜାଦ୍ ହୋ ଚୁକେ ହେଁ।

ପ୍ରତାପ ଚାଲ ଆମେ ସବୁଦେଶର ସୀମା ଡେଇଁ, ସବୁ ଜାତି ଧର୍ମର ବଂଧନ ଭାଙ୍ଗି, ସବୁ ମଣିଷକୁ ଏକ୍ ହବାର ଆହ୍ୱାନ କରିବା

ଜମାଲ ଏକ୍ ଦୁସ୍‌ରୋ କୋ ଗଲେ ଲଗାକେ ସବ୍ ଦୁସ୍‌ମନି ଭୁଲ୍‌ଯାନେ କେ ଲିଏ ଆହ୍ୱାନ କରେଙ୍ଗେ।

ପ୍ରତାପ ସାରାବିଶ୍ୱ ଏକ ଧର୍ମ, ଏକ ଜାତି, ମାନବଜାତି। ସାରାବିଶ୍ୱ ଏକ ପରିବାର। ଯୌଥ ପରିବାର।

ଜମାଲ ଧର୍ମ ଆଉ ନିଜକୁ ଧାର୍ମିକ ବୋଲାଇବା ପାଇଁ ମଣିଷ ମାରନା। ଆତଙ୍କବାଦ ର ଖେଳ ଖେଳନା।

ରାକେଶ ଦେଶ ଦେଶ ଭିତରେ ସୀମାରେଖା ଟାଣି ସାରାବିଶ୍ୱକୁ ଭାଗ ଭାଗ କରି ବାଣ୍ଟି ଦିଅନା ।

ପ୍ରତାପ ଆମେ ସମସ୍ତେ ଗୋଟିଏ ବିଶ୍ୱର ସନ୍ତାନ, ଗୋଟିଏ ମାତାର ସନ୍ତାନ।
"ବସୁଧୈବ କୁଟୁମ୍ବକମ୍"
(ଏହି ଧ୍ୱନି କ୍ରମେ ବଢ଼ି ବଢ଼ି ଚାଲିଲା ଦେଖାଗଲା ମାତୃରୂପା ଦେବୀର ଆର୍ବିଭାବ ହେଲା । ସମସ୍ତେ ତାଙ୍କରି ଜୟଧ୍ୱନୀ କଲେ)
" ଯାଦେବୀ ସର୍ବଭୂତେଷୁ ମାତୃରୂପେଣ ସଂସ୍ଥିତା
ନମଃ ତସ୍ତୈ, ନମଃ ତସ୍ତୈ, ନମଃ ତସ୍ତୈ, ନମୋଃ ନମଃ ..(୧)
ଯାଦେବୀ ସର୍ବଭୂତେଷୁ ଶାନ୍ତିରୂପେଣ ସଂସ୍ଥିତା
ନମଃ ତସ୍ତୈ, ନମଃ ତସ୍ତୈ, ନମଃ ତସ୍ତୈ, ନମୋଃ ନମଃ....(୨)

(ଯବନିକା)

## ପାତ୍ର ପରିଚୟ

| | |
|---|---|
| ଦିନେଶ | ପଲ୍ଲବ ଚଟାର୍ଜୀ |
| ପ୍ରକାଶ | ଅଭିଜିତ ଘୋଷ |
| ବିକାଶ | ସୌରଭ ଚକ୍ରବର୍ତ୍ତୀ |
| ପ୍ରଣତି | ତିସ୍ତା ଗାଙ୍ଗୁଲୀ |
| ଅସିତ୍ | ସେଖ ମହମ୍ମଦ ଅଲ୍ଲୀ |
| ଆକାଶ | ଦିବ୍ୟେନ୍ଦୁ କୁଣ୍ଡୁ |
| ପ୍ରଦୋଷ | ବେଦବ୍ୟାସ ମିଶ୍ର |
| ଅଞ୍ଜଳୀ | ରତ୍ନା ଚଟାର୍ଜୀ |
| ସଙ୍ଗୀତ ପରିଚାଳନା | ଶ୍ରୀପର୍ଣ୍ଣା ଚଟାର୍ଜୀ (ତିତିଲି) |
| ମଞ୍ଚସଜ୍ଜା | ଦେବବ୍ରତ ଗାଙ୍ଗୁଲୀ |
| ଆଲୋକ | ପଲ୍ଲବ ଚଟାର୍ଜୀ |
| ରୂପସଜ୍ଜା | ବଟକୃଷ୍ଣ ସ୍ୱାଇଁ |
| ବେଶଭୂଷା | ରତ୍ନା ଚଟାର୍ଜୀ |
| ବ୍ୟାକଷ୍ଟେଜ୍ | ସୁରଜିତ ବେନାର୍ଜୀ, ଶୁଭ୍ରାଂଶୁ ଶେଖର ମିତ୍ର, ସର୍ବାଣୀ ମିତ୍ର |
| ପ୍ରଥମ ପରିବେଷଣ | ତିତିଲି ଫାଉଣ୍ଡେସନ, ରାଉରକେଲା<br>କଲ୍‌ଚରାଲ ଏକାଡେମୀ ରାଉରକେଲା ଦ୍ୱାରା ଆୟୋଜିତ ୩୧ତମ ଲୋକନାଟକ ମହୋତ୍ସବ, ୨୦୧୬, ସିଭିକ୍ ସେଣ୍ଟର, ୧୭.୧୨.୨୦୧୬ରେ ଅଭିନୀତ |

# ପ୍ରଥମ ଦୃଶ୍ୟ

(ଦିନେଶ ବାବୁଙ୍କ ଡ୍ରଇଁଗ୍ରୁମ୍। ଦିନେଶ ବାବୁ ପଦଚାରଣ କରୁଛନ୍ତି ଓ Phone ରେ କାହା ସହିତ କଥା ହେଉଛନ୍ତି।)

ଦିନେଶ — ହ୍ୟାଲୋ....ହଁ ହଁ, ଟ୍ରେନ କେଉଁଠି ପହଞ୍ଚିଲାଣି ? କ'ଣ କହିଲୁ ତିନିଘଣ୍ଟା ଲେଟ୍ ଚାଲିଛି। ଆଚ୍ଛା ଆଚ୍ଛା ଆଉ ସବୁ ଠିକ୍ ଠାକ୍ ତ ? ହଉ ରହିଲି। (Phone କାଟିଲେ। ପୁଣି କାହାକୁ ଲଗାଇଲେ) ହ୍ୟାଲୋ....ହ୍ୟାଲୋ। ଧେତ ତେରିକି...। ଆଜିକାଲି ଟେଲିଫୋନ୍‌ରେ କଥା ହେବା ଏତେଟା ସହଜ ନୁହେଁ। କେତେବେଳେ Network ନାହିଁ ତ କେତେବେଳେ not reachable କହିଲାଣି। କେତେବେଳେ Line busy କହିଲାଣି ତ କେତେବେଳେ କଲ୍ ଡ୍ରପ୍ ହେଲାଣି। କେଉଁ କଥା ସମ୍ଭାଳିବ କୁହ, ତୁମର ଯେତେ ଜରୁରୀ କଥା ଥାଉ କି ତୁମେ ଯେତେ ବ୍ୟସ୍ତ ହେଉଥାଅ, କମ୍ପାନୀ ଦେବୀ କୃପା ହେଲେ ପଦେ କଥା କହିପାରିବ ନ ହେଲେ ମୁଣ୍ଡ ବାଡ଼େଇ ବା ଛଡ଼ା ଅନ୍ୟ ଉପାୟ ନାହିଁ।

ଅଞ୍ଜଳୀ — (ଦିନେଶ ବାବୁଙ୍କ ସ୍ତ୍ରୀ) ସେତେବେଳୁ ଜଣକ ପରେ ଜଣକୁ ଫୋନ ଲଗେଇ ଚାଲିଛ। କାହାକୁ ଫୋନ୍ କରୁଛ ଶୁଣେ ?

ଦିନେଶ — ପ୍ରକାଶକୁ।

ଅଞ୍ଜଳୀ — କ'ଣ train କଥା ପଚାରୁଥିଲ ? ପ୍ରକାଶ କ'ଣ train ରେ କୁଆଡ଼େ ଯାଉଛି କି ? ଏକା ନା ପିଲାମାନଙ୍କ ସାଙ୍ଗରେ ?

ଦିନେଶ — ଯାଉନି, ଆସୁଛି। ଏଇଠିକି, ଆମ ଘରକୁ। ଏକା ଆସୁଛି।

ଅଞ୍ଜଳୀ — କାହିଁକି ? କେଇଦିନ ତଳେ ତା' ସାଙ୍ଗରେ କଥା ହୋଇଥିଲି। ସେ ତ ଏଠିକି ଆସିବ ବୋଲି କିଛି କହୁନଥିଲା। କ'ଣ ଏମିତି ଜରୁରୀ କାମ ପଡ଼ିଲା କି ?

ଦିନେଶ — ମୁଁ ସେମାନଙ୍କୁ ଡକେଇଛି। ଜରୁରୀ କଥା ଅଛି।

ଅଞ୍ଜଳୀ — ଜରୁରୀ କଥା ? କି କଥା ? କାହିଁ ମୋତେ ତ ତୁମେ କିଛି କହିନ ? ହଠାତ୍ କ'ଣ ସେମାନଙ୍କୁ ଡକେଇ ପଠେଇଲ ? କାରଣ କ'ଣ ?

ଦିନେଶ — ଏତେ ବ୍ୟସ୍ତ ହେଉଛ କାହିଁକି ? ସେମାନେ ଏଠିକି ଆସିଲେ ବଳେ ଜାଣିବ ନାହିଁ। ସବୁ କଥା ତ ଏଇଠି ଆଲୋଚନା ହେବ। ତୁମେ ଶୁଣିବ ନାହିଁ। ସମସ୍ତେ ଆଗ ଆସି ସାରନ୍ତୁ।

ଅଞ୍ଜଳୀ — ସମସ୍ତେ ମାନେ ? କିଏ କିଏ ଆସୁଛନ୍ତି କି ?

ଦିନେଶ — ଆମର ସବୁ ପିଲାମାନେ। ପ୍ରକାଶ, ବିକାଶ ଆଉ ପ୍ରଣତି।

ଅଞ୍ଜଳୀ — ପ୍ରଣତି ଆସୁଛି ? ଏକା ନା ଜ୍ୱାଇଁ ଆଉ ପିଲାମାନେ ବି ସାଙ୍ଗରେ ଆସୁଛନ୍ତି ?

ଦିନେଶ — ପ୍ରଣତି ଏକା ଆସୁଛି, ଦି' ଦିନ ପାଇଁ। ପିଲାଙ୍କ ପରୀକ୍ଷା। ଆଉ ଜ୍ୱାଇଁ କଥା କହୁଛ ଯେ ସେ ଏଠିକି ଆସିବେ କି ନା କିଏ ଜାଣେ ? (ଏତିକିବେଳେ Phone ଲାଗିଗଲା) ହ୍ୟାଲୋ, ହଁ, ହଁ, ବିକାଶ ?

ତୁ ଆସୁଛୁ ନା ନାହିଁ ? କେଉଁଠି ହେଲୁଣି ? ଆଚ୍ଛା ଆଚ୍ଛା ତୋ ଭାଇ ଆସୁଛି ରାଜଧାନୀ ଏକ୍ସପ୍ରେସରେ। କ'ଣ କହିଲୁ ? ତୁ ବି ସେଇଥିରେ ଆସିବୁ ? ଷ୍ଟେସନରେ ଅପେକ୍ଷା କରିଛୁ ? ତିନି ଘଣ୍ଟା ଲେଟ୍ ଅଛି ବୋଲି ପ୍ରକାଶ କହୁଥିଲା। ପ୍ରଣତିର ଖବର କ'ଣ ? ତା' Phone ଲାଗୁନି ?...ହ୍ୟାଲୋ... ହ୍ୟାଲୋ...ଯାଃ ପୁଣି call drop ? (ପୁଣି ଲଗେଇଲେ)

ଅଞ୍ଜଳୀ ନିଅ, ଚା ପିଅ, ତା'ପରେ Phone କରିବ। କ'ଣ କହିଲ ? ଜ୍ୱାଇଁ ଏଠିକି ଆସିବେ ନାହିଁ। କାହିଁକି ଶୁଣେ ?

ଦିନେଶ ତୁମେ କ'ଣ ଜାଣିନ ? ଝିଅର ବାପା ମାଆ ହୋଇ ପୁଅ ଘରର ଟିକିନିଖି କଥାରେ ମୁଣ୍ଡ ପୁରେଇବ ଛେନାରୁ ଚୋପା ଛଡ଼େଇବ, ସେମାନେ ବିରକ୍ତ ହେବେନି। ଏଇଥିପାଇଁ ଘର ଭାଙ୍ଗେ। କିଏ କାହିଁକି ସହିବ ? ତୁମ ସମୁଦି ସମୁଦୁଣୀ ଆମ ଘର କଥାରେ ମୁଣ୍ଡ ପୁରେଇଲେ ତୁମେ ସହିବ ତ ?

ଅଞ୍ଜଳୀ ସେମାନେ ତାଙ୍କ ଝିଅ ଜ୍ୱାଇଁଙ୍କ କାନ ଭରୁଛନ୍ତି କି ନାହିଁ, ତୁମେ ଜାଣିଛ ? ନ ହେଲେ ସେମାନେ ଆମ ଠାରୁ ଦୂରେଇ ଦୂରେଇ ଯାଉଛନ୍ତି କାହିଁକି ?

ଦିନେଶ ଧେତ ତେରିକା, ଏ Phone ଟାକୁ କ'ଣ ହେଲା କେଜାଣି, ଖାଲି କୁଁ କୁଁ ହେଉଛି। ଦେଲ ଦେଲ ତୁମ Phone ଟା କାଳେ ସେଥିରୁ ଲାଗିଯାଇପାରେ ?

ଅଞ୍ଜଳୀ ଭିତରେ ଫ୍ରିଜ ଉପରେ ଅଛି, ଯାଇ ନେଇ ଆସ। ଏତେ ସମୟ ପରେ ମଣିଷ ଟିକିଏ ବସିପଡ଼ିଲା ଯେ ଆରାମରେ ଚା' ଟୋପେ ପିଇବ ବୋଲି, ସେତକ ବି ଶାନ୍ତିରେ କରେଇ ଦେବନି।

ଦିନେଶ ହେଉ ବସ, ବସ। ମୁଁ ଯାଇ Phone ନେଇ ଆସୁଛି। (ଭିତରକୁ ଗଲେ)

ଅଞ୍ଜଳୀ ମାସେ ହେଲା ଆଣ୍ଠୁ ବଥା ହେଉଛି ଯେ କହି କହି ତ ଟିକିଏ ଡାକ୍ତରଙ୍କ ପାଖକୁ ନେଲନି। ପ୍ରତିଦିନ ରାତିରେ ଗରମ ତେଲ ଲଗେଇ ସେକ ଦେଲେ ଟିକିଏ ଆରାମ ଲାଗୁଛି ନ ହେଲେ ସକାଳୁ ବିଛଣାରୁ ଉଠି ଭୂଇଁରେ ପାଦ ଥାପି ହେଉନି। (ଦିନେଶ ବାବୁଙ୍କ Phone ବାଜିବ। ଅଞ୍ଜଳୀ ଉଠାଇ ନେବେ। ହଠାତ୍ ଦିନେଶ ବାବୁ ପ୍ରବେଶ କରି ଅଞ୍ଜଳୀ ହାତରୁ Phone ଝାମ୍ପି ନେବେ।)

ଦିନେଶ ହ୍ୟାଲୋ, କିଛି ଶୁଭୁନି....(ଫୋନ୍ କାଟିଦେଲେ) ମୋ ଫୋନ୍ କାହିଁକି ଉଠେଇଲ ?

ଅଞ୍ଜଳୀ Phone ଟା ବାଜିଲା, ଉଠେଇଲି ତ କ'ଣ ମହାଭାରତ ଅଶୁଦ୍ଧ ହୋଇଗଲା।...ତୁମେ ମୋ ଫୋନ୍ ଧରିଛ କେମିତି ? ମୁଁ ତ ତୁମକୁ ମନା କରୁନି.... ଓହୋ ଢୋଲ ଭିତରେ ମୂଷା ପଶିଲାଣି କି ଆଉ ?...

ଦିନେଶ କ'ଣ ମୂଷା ପଶିଲା.....

ଅଞ୍ଜଳୀ ଆଉ ଏତେ ଲୁଚାଛପା କ'ଣ ? ବୁଡ଼ି ବୁଡ଼ି ପାଣି ପିଉନ ତ ? ହେଇଟି ବୁଝି ସାବଧାନ.... ନହେଲେ ଜୀବନ ହାରିବି... (କାନ୍ଦିଲେ)

ଦିନେଶ ଆରେ କାନ୍ଦୁଛ କାହିଁକି ? ସେ ସବୁ କିଛି ନୁହେଁ....। ମୋ ରାଣ...ତୁମ ରାଣ....

ଅଞ୍ଜଳୀ ତା'ହେଲେ ମୋ କଥା ଶୁଣୁନ କାହିଁକି ?

ଦିନେଶ କ'ଣ କୁହ...

ଅଞ୍ଜଳୀ ମୋ ଗୋଡ଼...

ଦିନେଶ (ପ୍ରବେଶୀ) ଦିନସାରା ଏତେ ଚାଲୁଛ କାହିଁକି ? ଟିକିଏ ବିଶ୍ରାମ ନେଉନ।

ଅଞ୍ଜଳୀ ଆହା କି ଦରଦିଆ କଥା। ଯିଏ ଶୁଣିବ, କହିବ ବାବୁ ତାଙ୍କ ଘରଣୀଙ୍କି ମୁଣ୍ଡରେ ମୁଣ୍ଡେଇଛନ୍ତି। କିହୋ ମୁଁ କ'ଣ ଖୁସିରେ ଚାଲୁଛି ନା ମେଳାରେ ବୁଲୁଛି। ମୁଁ ରେଷ୍ଟ ନେଲେ ତୁମ ସଂସାର ଚାଲିବ କେମିତି ? ଘରଓଳା ଠାରୁ ବାସନ ମଜା, ଲୁଗା କଚା କରିବ କିଏ ? (ପୁଣି Phone ଆସିଲା।)

ଦିନେଶ (ପୁଣି Phone କାଟିଲେ) ସେସବୁ ମନକୁ ହେବନି।

ଅଞ୍ଜଳୀ କ'ଣ ମନକୁ ହେବ ? ହଁ, ସବୁ ମେସିନ ଲଗେଇ ଦେଉନ, ପୁଅବୋହୂଙ୍କ ଭଳିଆ। ଏପଟେ ଲୁଗା ପୁରେଇଲେ ଘଡ଼ିକେ ଶୁଖିଲା ହୋଇ ବାହାରିବ ନା ସେତେବେଳକୁ ପଇସା ନାହିଁ। କହୁନ କୁହ....

ଦିନେଶ (Phone ଲଗେଇ ଚାଲିଥାନ୍ତି) ଓହୋ ଟିକିଏ ଚୁପ୍ ରୁହ ଭଲା।

ଅଞ୍ଜଳୀ ହଁ, ପଇସା ଖର୍ଚ୍ଚ କଥା ପଡ଼ିଲେ ଚୁପ୍ ରହିବାକୁ କହିବ ମୁଁ ଜାଣେ। ହେଇଟି ଆମର କ'ଣ ଅଫିସ ଚାକିରୀ ହୋଇଛି ଯେ ଷାଠିଏ ବର୍ଷରେ retired ହୋଇଯିବ ଆଉ କାମ କରିବା ଦରକାର ନାହିଁ। ଘରେ ବସି ପେନ୍‌ସନ୍ ପାଇବ, ଆଉ ଗୋଡ଼ ଉପରେ ଗୋଡ଼ ରଖିବ ସ୍ତ୍ରୀଙ୍କୁ ଫରମାଇସ୍ କରିବ।

ଦିନେଶ (ଲୁଚି ଲୁଚି Phone ଲଗାଇଲେ) ଆରେ ଏମିତି ବାରମ୍ବାର Phone କଲେ କ'ଣ ହେବ.... ?

ଅଞ୍ଜଳୀ ଆଜି ଏଇଟା ଖାଇବି, କାଲି ସେଇଟା ଖାଇବି। ସକାଳ ଜଳଖିଆରେ ପରଟା କର, ସଞ୍ଜବେଳକୁ ପକୁଡ଼ି ଛାଣ। ଆମର ପରା ରୋଷେଇ ଘର ଚାକିରୀ। ଏଠି ରିଟାୟାର୍ଡ ନାହିଁ କି ପେନ୍‌ସନ୍ ନାହିଁ। ସ୍ୱର୍ଗକୁ ଗଲେ ଯାଇ ଛୁଟି ମିଳିବ।

ଦିନେଶ ମୋତେ ଆଉ ଦିନ କେଇଟା ସମୟ ଦିଅ।

ଅଞ୍ଜଳୀ ନହେଲେ ସକାଳଠୁ ରାତି ଅଧଯାକେ ୪ ପ୍ରହର ଖନ୍ଦା ଚାଲିଥିବ, ଖିଆପିଆ ଚାଲିଥିବ, ଫରମାଇସ୍ ଉପରେ ଫରମାଇସ ଆସୁଥିବ। କାହା ସାଙ୍ଗରେ କଥା ହେଉଛ ? ମୋ କଥା ଶୁଭୁଛି ନା ନାହିଁ! ସେ ସବୁକୁ ସମ୍ଭାଳି ଚଳିପାରଲ ଯଦି ଭଲ ନ ହେଲେ ନାରୀ ଜାତିରେ କଳଙ୍କ। ଦେହ ଖରାପ ହେ ପାଦ ଦରଜ ହେଉ କି ମୁଣ୍ଡ ବ୍ୟଥା ହେଉ, ତ୍ରାହି ନାହିଁ।

ଦିନେଶ ହ୍ୟାଲୋ ପ୍ରଣତି ! କେଉଁଠି ଅଛୁ ? ଷ୍ଟେସନରେ ? କ୍ୱାଇଁ ଛାଡ଼ିବାକୁ ଆସିଛନ୍ତି। କେଉଁ ଗାଡ଼ିରେ ଆସୁଛୁ, ରାଜଧାନୀ ଏକ୍ସପ୍ରେସରେ ? ସେଇ ଗାଡ଼ିରେ ପ୍ରକାଶ, ବିକାଶ ମଧ୍ୟ ଆସୁଛନ୍ତି ? କୋଚ ନମ୍ବର ମୁଁ ଜାଣିନି। ତୁ ତାଙ୍କ ସାଙ୍ଗରେ କଥା ହେଲେ ଜାଣିଯିବୁ। ହଁ, ଶୁଣ। ଦରକାର ହେଲେ Phone କରିବୁ ମୁଁ ତୋତେ ଆଣିବାକୁ ଷ୍ଟେସନ ଯିବି ନ ହେଲେ....ହଁ ହଁ ଭାଇମାନଙ୍କ ସାଙ୍ଗରେ ଚାଲିଆସିବୁ। ଠିକ୍ ଠିକ୍.... କ'ଣ କହିଲୁ ତୋ ମାଆ....ଯାଃ ପୁଣି କଟିଗଲା। ନିଅ ରଖ।

ଅଞ୍ଜଳୀ ମୁଁ ବୁଝିପାରୁନି। ଏଇନେ ତ କିଛି ପର୍ବପର୍ବାଣି ନାହିଁ କି ଶ୍ରାଦ୍ଧ ଶାନ୍ତି ନାହିଁ। ହଠାତ୍ ପିଲାମାନଙ୍କୁ ଡକେଇ ପଠେଇଲ କାହିଁକି ? ତାଙ୍କ ପାଖରେ କି କାମ ଅଛି ମୋତେ କହୁନ।

ଦିନେଶ ରୁହ ରୁହ, ଚା ଏଣେ ଥଣ୍ଡା ହୋଇଗଲାଣି। ମୁଁ ଆଗ ପିଇନିଏ, ତା'ପରେ କହିବି।

ଅଞ୍ଜଳୀ ଏବେ କୁହ। ଚା ପିଉ ପିଉ କ'ଣ କଥା କହିବା ମନା ?

ଦିନେଶ ଘର ଭିତରେ ତ ଦୁଇଟା ଲୋକ, ତୁମେ ଆଉ ମୁଁ। ତୁମେ କହିଲେ ମୁଁ ଶୁଣିବି, ମୁଁ କହିଲେ ତୁମେ ଶୁଣିବ। ଏତେ ଅଥୟ କିଆଁ ?

ଅଞ୍ଜଳୀ ମଲା, ମଲା, ଯାଙ୍କ କଥା ଶୁଣ। ମୂଳରୁ ନ କହିବ ସେଇଟା ଅଲଗା କଥା। ତୁମେ କଥା ବାଆଁରେଇଲେ କ'ଣ ମୁଁ ବୁଝିପାରୁନି। କହିବାର ଯଦି ନ ଥିଲା, ତାହେଲେ କଥାର ଖିଅ ବାହାର କରୁଥିଲ କାହିଁକି? କଥାର ଶୁଣ୍ଢ ବାହାର କରି ପୁରା କଥାଟା ନ କହିଲେ ମନ ଆଉଟୁ ପାଉଟୁ ହେବନି?

ଦିନେଶ ମୁଁ ଜାଣେ ପରା ତୁମମାନଙ୍କ ଗୁଣ ସେଇଆ। କାନ କୁହା କଥା, ଶୁଣିବାକୁ ହକ ହକ ହେବ, ପୁଣି ଶୁଣି ସାରିଲେ ଆଉ କାହା କାନରେ ଫୁସୁର ଫାସର ହେବାକୁ ଛକପକ ହେବ। ତୁମରିମାନଙ୍କ ପାଇଁ ପରା ତୁଣ୍ଡ ବାଇଦ ସହସ୍ର କୋଶ।

ଅଞ୍ଜଳୀ ହଉ ହେଲା। କାନିରେ ଗଣ୍ଠି ପଡ଼ିଲା। ଏ ଜିଭ ଆଉ ଲେଉଟିବ ନାହିଁ କି ମୁଁ ଆଉ ପଚାରିବି ନାହିଁ। କେତେଦିନ ଲୁଚେଇ ରଖିବ ରଖିଥାଅ। ହେଲେ ଯେଉଁ ଦିନ କହିବ, ଅଞ୍ଜୁ ଅମୁକକୁ ସମୁକ ହେଲା ଯେ କ'ଣ କରିବା କହିଲ? ସେଇଦିନ ମୋ ମୁହଁରୁ ପୁରାଣ ଶୁଣିବ।

ଦିନେଶ ଆହେ ଶୁଣିବି କ'ଣ? ରାତି ପାହି କାଉ କା କଲା ବେଳଠୁଁ ପୁରାଣ ଶୁଣିଛି ଯେ ପେଚା ରାବିବା ପର୍ଯ୍ୟନ୍ତ ଚାଲିଛି ଅନର୍ଗଳ। ବୁଝିଲ ମୁଁ ବୋଲି ଧୈର୍ଯ୍ୟ ଧରି ଅଛି ଆଉ କିଏ ହୋଇଥିଲେ ବାବାଜୀ ହୋଇ କେଉଁ କାଳରୁ ମଠ ନ ହେଲେ ଆଶ୍ରମକୁ ଯାଇ ସାରନ୍ତାଣି। ଆଉ ଶୁଆ ଶାରୀ ପୋଷି ଥିଲେ ରାମ ନାମ ଛାଡ଼ି ତୁମରି କଥା ଖାଲି ବାହୁନି ହେଉଥାନ୍ତେ।

ଅଞ୍ଜଳୀ ହଉ ହେଲା, ସେତିକି ଥାଉ। ଏଥର କୁହ ପିଲାମାନେ କେତେବେଳେ ଆସି ପହଞ୍ଚିବେ? ରାତି ରୋଷେଇ କ'ଣ ହେବ?

ଦିନେଶ ପ୍ରକାଶ କହୁଥିଲା ତିନି ଘଣ୍ଟା late । ହୁଏତ ଆହୁରି late ବି ହୋଇପାରେ। ଧରିନିଅ ରାତି ୧୧ଟା କି ୧୨ଟା। ରୁଟି, ସନ୍ତୁଳା ଆଉ ସିମିଆ କରିଦିଅ ଚଳିଯିବ।

ଅଞ୍ଜଳୀ କାଲି ସକାଳ ପାଇଁ ଆଳୁ, ପିଆଜ, ପରିବା କିଛି ନାହିଁ। ଯାହା ରୋଷେଇ ହେବ, ସବୁ ଆଣିବ।

ଦିନେଶ କାଲିକା କଥା କାଲିକି ଅଛି। (ଅଞ୍ଜଳୀ ଚା କପ ନେଇ ଭିତରକୁ ଗଲେ ଦିନେଶ Phone ଲଗାଇଲେ) ହ୍ୟାଲୋ, ହଁ ଶୁଣ ପିଲାମାନେ ଆଜି ରାତିରେ ଆସୁଛନ୍ତି। ତୁ ପ୍ରସ୍ତୁତ ଅଛୁ ତ? କାଲି ଓପରିଓଳି ଆସୁନୁ। କାଲି ତ ରବିବାର, ତୋର ଛୁଟି ଥିବ, ଅସୁବିଧା କ'ଣ? ଠିକ୍ ଅଛି, ହଁ ୪ଟା (ଚାରିଟା) ବେଳକୁ ଆସିଲେ ଚଳିବ। ରହିଲି। (Phone କାଟିଲେ ପୁଣି କାହାକୁ Phone ଲଗାଇଲେ) Hello ! ହଁ ଶୁଣ! ତୁ ଏଠିକି ଆସିବୁ କହୁଥିଲୁ ପରା, କାଲି ଆସୁନୁ। ପିଲାମାନେ ଆଜି ରାତିରେ ଆସିବେ। ପରଦିନ ବୋଧହୁଏ ଚାଲିଯାଇ ପାରନ୍ତି। ମୁଁ ଜାଣିନି। ତୁ କାଲି ସକାଳେ ବାହାରି ଚାଲିଆ। ତା'ହେଲେ ସମସ୍ତଙ୍କ ସାଙ୍ଗରେ ଦେଖାହେବ କଥାବାର୍ତ୍ତା ବି ହୋଇପାରିବ। ହଁ, ହଁ ରହିଲି। ନମସ୍କାର। (ଅଞ୍ଜଳୀର Phone ବାଜିଲା) ଆରେ ତୁମ Phone ବାଜୁଛି ପରା।

ଅଞ୍ଜଳୀ (ଭିତରୁ ହାତ ପୋଛୁ ପୋଛୁ ତରତରରେ ଆସି) ତୁମେ ଟିକିଏ ଉଠେଇ ଦେଇପାରୁନ (Phone ଉଠେଇ) Hello ! ହଁ ହଁ କୁହାର....

ଦିନେଶ କିଏ?

ଅଞ୍ଜଳୀ ଝିଅ! ହଁ, ହଁ, ତୁ ଏବେ କେଉଁଠି ଅଛୁ। (ଦିନେଶକୁ) ସେ ଟ୍ରେନରେ ବସିଗଲାଣି।

ଦିନେଶ ପଚାର ଆଉ କିଛି ଅସୁବିଧା ହୋଇନି ତ?

ଅଞ୍ଜଳୀ ନିଅ ତୁମେ କଥା ହୁଅ...

ଦିନେଶ ସବୁ ଠିକ୍ ଠାକ୍ ତ ? ଭାଇମାନଙ୍କ ସାଙ୍ଗରେ କଥା ହେଲୁ କି ନାହିଁ ? ଦେଖା ହେଲୁ କି ନାହିଁ ? ଆଚ୍ଛା ଆଚ୍ଛା ବଡ଼ଭାଇର compartment ରେ ତୋ ସିଟ୍... very good ମୋର ଚିନ୍ତା ଗଲା। ଗାଡ଼ି କେତେ ଲେଟ୍ ଅଛି ନା କିଛି adjust ହେଲାଣି ? କ'ଣ କହିଲୁ ତିନି ଘଣ୍ଟା ୩୦ ମିନିଟ୍ ଲେଟ୍। ତା'ମାନେ ଏଠି ପହଞ୍ଚୁ ପହଞ୍ଚୁ ଆହୁରି ଲେଟ୍ ହୋଇପାରେ। ଧରିନିଅ ୪ ଘଣ୍ଟା।

ଅଞ୍ଜଳୀ ୫ ଘଣ୍ଟା ନ ହେବ ବୋଲି କ'ଣ କହିପାରିବ ?

ଦିନେଶ (Phone କାଟିଲେ) ହେଲେ ବି ଚିନ୍ତା ନାହିଁ। ଦି' ଭାଇ ତା' ସାଙ୍ଗରେ ଅଛନ୍ତି। train ରୁ ଓହ୍ଲେଇ taxi କରି ସିଧା ଚାଲି ଆସିପାରିବେ। କେତେଟା ବାଜିଛି ?

ଅଞ୍ଜଳୀ ୮ଟା ବାଜିବ କି କ'ଣ ?

ଦିନେଶ ଏଥର ରନ୍ଧାରନ୍ଧି ଆରମ୍ଭ କରିଦିଅ।

ଅଞ୍ଜଳୀ ସନ୍ତୁଳା ପାଇଁ କାଟି ଦେଇଛି। ସିମିଆ ବସିଛି। ୧୦ଟା ବାଜିଲେ ରୁଟି କରିବି। ଯାଏଁ ଆଗ ପିଲାଙ୍କ ପାଇଁ ବିଛଣା ସଜାଡ଼ି ଦିଏ।

(ପୁଣି Phone ବାଜିଲା। ଦିନେଶ ଅଞ୍ଜଳୀକୁ ଅନେଇଲେ, ଦେଖିଲେ ଅଞ୍ଜଳୀ ମଧ୍ୟ Phoneକୁ ଅନେଇଛି।)

ଦିନେଶ ଚାଲ ଚାଲ, ମୁଁ ତୁମକୁ ସାହାଯ୍ୟ କରୁଛି।

ଅଞ୍ଜଳୀ Phone ଧରୁନ...

ଦିନେଶ ରଙ୍ଗ ନମ୍ବର (କାଟିଦେଲେ। ଅଞ୍ଜଳୀ ଭିତରକୁ ପଳାଇଲେ। ଦିନେଶ Phone ଲଗାଇଲେ।) Hello! ଏମିତି ବାରମ୍ବାର Phone କରି କିଛି ଲାଭ ନାହିଁ। ଆଉ କିଛି ଦିନ ସମୟ ଦିଅ please ଆଜି ସବୁ ପିଲାମାନେ ଆସୁଛନ୍ତି। ତାଙ୍କ ସାଙ୍ଗରେ କଥା ହୁଏ....କାଲି...ନାହିଁ ନାହିଁ ପଅରଦିନ ଜଣେଇବି....ok ....good night.... (ଅନ୍ଧାର)

## ଦ୍ୱିତୀୟ ଦୃଶ୍ୟ

(ପୂର୍ବ ଡ୍ରଇଁରୁମ୍। ସମୟ ସକାଳ। ଗୋଟିଏ ଟ୍ରେରେ ୩ଟା କପ୍ ଓ ଦୁଇଟା ଗ୍ଲାସରେ ଚା' ଓ ଅନ୍ୟ ହାତରେ ଗୋଟିଏ ଟେବୁଲ ଘଣ୍ଟାରେ alarm ବାଜି ଚାଲିଛି। ପ୍ରବେଶ କଲେ ଦିନେଶ ବାବୁ। ନିଜେ ବସିଲେ। ଘଣ୍ଟା ବାଜିବା ବନ୍ଦ ହେଲା। କିନ୍ତୁ କେହି ଆସିଲେ ନାହିଁ। ତେଣୁ ଗୀତ ଗାଇଲେ।)

ଦିନେଶ (ଗୀତ) : ପାହିଲା ଅନ୍ଧାର ରଜନୀ-ଉଠ ଉଠ ବାଳକେ, ନବୀନ ପ୍ରଭାତ ସମୟ-ଏବେ ଗାଅ ପୁଲକେ।

ଅଞ୍ଜଳୀ (ଭିତରୁ ମୁଣ୍ଡ ପୋଛୁ ପୋଛୁ ଆସିଲେ) ଓହୋ ଏମିତି ଉଚ୍ଛନ୍ନ ହୋଇ ବେଙ୍ଗ ରଡ଼ି କରି ଗୀତ କାହିଁକି ଗାଉଛ ?

ଦିନେଶ ପିଲାମାନଙ୍କୁ ଡାକି ଚା' ପିଇବ ଆସ।

ଅଞ୍ଜଳୀ ଆରେ ବାପ୍‌ରେ ବାପ। ଆଜି ସୂର୍ଯ୍ୟ କେଉଁ ଦିଗରୁ ଉଇଁବେ କେଜାଣି ?

ଦିନେଶ କାହିଁକି ? ମୋତେ କ'ଣ ଚା' କରିଆସେନି ? ଆଗ ପିଇ ସାରି ତା'ପରେ କହିବ। ଦେଖ, ଚା'ର ରଙ୍ଗଟା ଆଗେ ଦେଖ,।

ଅଞ୍ଜଳୀ (ଦେଖି) ସେଇଆ ତ ଦେଖୁଛି। ତେବେ ଚିନି ଜାଗାରେ ଲୁଣ ପକେଇ ଦେଇନଥିଲେ ହେଲା।

ଦିନେଶ କମେଣ୍ଟ ମାରିବା ଆଗରୁ ଚାଖିକି ଦେଖ। ନିଅ ପିଅ।

ଅଞ୍ଜଳୀ ମୁଁ ପୂଜା ସାରିବା ଯାଏ ଚା' ବି ପିଏନି। ତୁମେ କ'ଣ ଜାଣିନ ?

ଦିନେଶ ପିଲାମାନଙ୍କୁ ଡାକୁନ। ଚା' ଥଣ୍ଡା ହୋଇଯିବ ପରା।

ଅଞ୍ଜଳୀ କାଲି ରାତିରେ ଡେରିରେ ପହଞ୍ଚିଛନ୍ତି। ଆଉ ଟିକିଏ ଶୋଇଥାନ୍ତୁ।

ପ୍ରଣତି (ଭିତରକୁ ଆସି) କ'ଣ ହେଲା ମାଆ ? ପାଟି କରୁଛୁ କାହିଁକି ?

ଅଞ୍ଜଳୀ ଆଜି ତୋ ବାବା ସମସ୍ତଙ୍କ ପାଇଁ ଚା' ବନେଇଛନ୍ତି ତ, ସେଥିପାଇଁ ବ୍ୟସ୍ତ ହୋଇପଡ଼ୁଛନ୍ତି। କାଳେ ଚା' ଥଣ୍ଡା ହୋଇଯିବ।

ପ୍ରଣତି ବାଃ ! ୱାଁ ୱାଁ ! ଆଚ୍ଛା, ଆଚ୍ଛା ମୁଁ ସମସ୍ତଙ୍କୁ ଡାକି ଦେଉଛି ରହିଥା। ହେ ଭାଇ ! ସାନଭାଇ, ଜଲଦି ଆସ ଚା' ପିଇବା।

ପ୍ରକାଶ ତୁ ଯେମିତି ଡାକୁଛୁ, ଚାଁ ନୁହେଁ ତ ଭୋଜି ଖାଇବାକୁ ଗଲା ଭଳିଆ ଲାଗୁଛି।

ବିକାଶ କାହିଁକି ଚିଲାଉଛୁ କିରେ ପ୍ରଣତି ?

ପ୍ରଣତି ଚା' ପିଇବା ଆସ। ଆଜି ବାପା ଚା' ବନେଇଛନ୍ତି।

ପ୍ରକାଶ ସତେ ନା' କ'ଣ ? (ସମସ୍ତେ ଆସିଲେ)

ବିକାଶ ଏଇଟା ଗ୍ଲାସ ଦୁଇଟା କାହାର ?

ଦିନେଶ ଏଇଟା ତୋ ମାଆର। ସେ ପୂଜା କରି ସାରିଲେ ପିଇବ।

ପ୍ରକାଶ ଆଉ ସେ ଗ୍ଲାସଟା ?

ଦିନେଶ ମୋର, ମୁଁ ପିଇ ସାରିଲିଣି।

ପ୍ରଣତି ତୁ ବୁଝିପାରୁନୁ ନା କ'ଣ ? ଏ ଗ୍ଲାସ ହେଉଛି ଏମାନଙ୍କ ପାଇଁ ଆଉ କପ୍‌ଗୁଡ଼ାକ...

ବିକାଶ କ'ଣ ଆମମାନଙ୍କ ପାଇଁ ? ତା' ମାନେ ଆମେ କ'ଣ ଗେଷ୍ଟ ? ନା, ନା ଆମେ ଗେଷ୍ଟ କାହିଁକି ହେବୁ ବରଂ ତ ଗେଷ୍ଟ। ଆମେ କାହିଁକି ଗେଷ୍ଟ ହେବା ? ଏଇଟା ପରା ଆମ ଘର।

ପ୍ରକାଶ ନିଜ ଘରେ କ'ଣ କେହି ଗେଷ୍ଟ ହୋଇପାରେ ?

ଦିନେଶ ଏବେ ଏଇଠି ସମସ୍ତେ ଗେଷ୍ଟ । ପୁଅ ହେଉ କି ଝିଅ ସମସ୍ତେ ଦି' ଦିନିଆ ଗେଷ୍ଟ। ତୁମେ ବସି ଗପସପ ହୁଅ ଆଉ ଚା' ପିଅ। ମୁଁ ମାର୍କେଟରୁ ଆସୁଛି। ଅଞ୍ଜୁ ପରିବା ବ୍ୟାଗଟା ଦେଲ। (ଅଞ୍ଜଳୀ ପରିବା ବ୍ୟାଗ ଆଣିଲେ)

ଅଞ୍ଜଳୀ ମୁଁ ପୂଜା ଘରକୁ ଯାଉଛି, ଏଇନେ ଆଉ ଡାକିବ ନାହିଁ। (ବ୍ୟାଗ ଦେଇ ଅଞ୍ଜଳୀ ଭିତରକୁ ଗଲେ, ଦିନେଶ ବାହାରକୁ ଗଲେ)

ପ୍ରଣତି ବାପା ଆଜି ପୁରା ଅଲଗା ଲାଗୁଛନ୍ତି।

ବିକାଶ ବୋଧହୁଏ ଆମେ ଆସିଛୁ ବୋଲି ଭାରି ଖୁସି ଅଛନ୍ତି।

ପ୍ରକାଶ ଆମକୁ ଡକେଇଛନ୍ତି ବୋଲି ବ୍ୟସ୍ତ ଚିନ୍ତିତ ମଧ୍ୟ ଥାଇପାରନ୍ତି। କିନ୍ତୁ ସେ ବା ଆମକୁ କାହିଁକି ଡକେଇଛନ୍ତି, ସେ କଥା ତ ଏ ପର୍ଯ୍ୟନ୍ତ ଅଜଣା।

ବିକାଶ ଏବେ ଏବେ ରିଟାୟାର୍ଡ କରିଛନ୍ତି ତ। କାମ ତ କିଛି ନାହିଁ। ତେଣୁ ମନେ ମନେ କିଛି ପ୍ଲାନ କରିଥିବେ। ସେଇକଥା ଜଣାଇବାକୁ ଡାକି ଥାଇ ପାରନ୍ତି।

ପ୍ରକାଶ ତୋତେ କ'ଣ ସେ ବିଷୟରେ କିଛି କହିଛନ୍ତି ?

ବିକାଶ ନା।

ପ୍ରଣତି ହେଲେ ମୋତେ ଡକରା ପଡ଼ିଲା କାହିଁକି ?

ପ୍ରକାଶ ତା'ହେଲେ ତୁ ଜାଣିଲା ଭଳିଆ କହୁଛୁ ଯେ..

ବିକାଶ ଅନୁମାନ କରି କହୁଛି।

ପ୍ରଣତି ମୁଁ ଭାବୁଛି, ବାପା ମାଆ ଭିତରେ ଆଉ କଳିଗୋଳ କିଛି ହେଇନି ତ ?

ବିକାଶ ହେଲେ ସେମିତି ତ କିଛି ଜଣାପଡୁନି।

ପ୍ରକାଶ ତୁମମାନଙ୍କର ଯେଉଁ କଥା ନା। ଆରେ ବାପା ମାଆଙ୍କର କଳିକଜିଆ କେଉଁ ନୂଆ କଥା କି ? ସବୁ ଘରେ ହୁଏ, ହେଉଛି ଆଉ କାଳ କାଳକୁ ହେଉଥିବ। ତା' ବୋଲି ତାଙ୍କ କଳିକଜିଆ ସମାଧାନ କରିବେ ତାଙ୍କ ପୁଅଝିଅ। ସେ କଥା ତ କେବେ କେଉଁଠି ଦେଖିନି କି ଶୁଣିନି।

ପ୍ରଣତି ଏପର୍ଯ୍ୟନ୍ତ ଦେଖିନ କାରଣ ସେ ସମୟ ଆସିନି କି ତୁମେ ତାଙ୍କ ପାଖରେ ରହୁନ। ଆଉ ଦଶବର୍ଷ ଯାଉ ସେମାନେ ଆଉ ଟିକିଏ ବୁଢ଼ାବୁଢ଼ୀ ହୋଇଯାଆନ୍ତୁ, ଦେଖିବ ସେମାନଙ୍କ କଳିଗୋଳ ମେଣ୍ଟାଇବାକୁ ପୁଅଝିଅ ନୁହେଁ, ନାତିନାତୁଣୀଙ୍କୁ ଡକରା ପଡ଼ିବ। ସେ କଥା ପରା ମୁଁ ଅଙ୍ଗେ ନିଭାଉଛି।

ପ୍ରକାଶ ଆମ ସମସ୍ତଙ୍କୁ ଏକା ସାଙ୍ଗରେ ଡାକିବାର ଗୁରୁତ୍ୱ କିଛି ଥିଲା ଭଳି ମୋତେ ଜଣାପଡୁନି। ଇଏ ବାପାଙ୍କର ଗୋଟିଏ ଖିଆଲ ନ ହେଲେ ପିଲାଳିଆମି ହୋଇଥିବ। ଓହୋ ! କେତେ କାମ ପକେଇ ମଣିଷ ଯେ ଆସିଛି, ତା'ର ସୀମା ନାହିଁ।

ବିକାଶ କାହାର ଆଉ କାମ କମ ଅଛି କି ଭାଇ, ସେଥିରେ ପୁଣି ବାପା କହୁଥିଲେ ଲିସାକୁ ଧରି ଆସିବାକୁ। ସେ କେମିତି ଆସିଥାନ୍ତା କହିଲ ? ଏବେ ତା'ର ପ୍ରମୋସନ ହେବାର ଅଛି। କାମର ଭିଡ଼ ଯେ କାହିଁରେ କ'ଣ ? ସକାଳ ୯ଟାରୁ ରାତି ୧୦ଟା କି ୧୧ଟା ବାଜୁଛି। ଅଧିକାଂଶ ଦିନରେ ଘରେ ରୋଷେଇ ନାହିଁ। ବାହାରୁ ମଗେଇ ଖାଉଛୁ।

ପ୍ରକାଶ କାହାକୁ କହୁଛୁ ସେ କଥା – ବେନି ଜନେ ପଡ଼ିଛି ସମଦଶା

ପ୍ରଣତି ସବୁଦିନ ବାହାର ଖାଦ୍ୟ ଖାଇଲେ ସ୍ୱାସ୍ଥ୍ୟ ଖରାପ ହେବ ଯେ।

ପ୍ରକାଶ ନ ଖାଇ ଉପାୟ କ'ଣ ? କୌଣସି ମତେ ସକାଳ ଟିଫିନଟା ଘରେ ଖାଇ ବାହାରିଯିବା କଥା। ସେ ପୁଣି ଚୂଡ଼ା, କଦଳୀ, cornflor ନହେଲେ କ୍ଷୀର। ଦ୍ୱିପ୍ରହରରେ ରୁଟିରେ, ରାତିରେ ଫେରିଲା ବେଳକୁ ଆଉ ଦେହରେ ଜୀବନ ଥିବ ଯେ ରୋଷେଇ କରିବାକୁ ଇଚ୍ଛା ହେବ। ତେଣୁ ବାହାରୁ ମଗେଇବାକୁ ପଡ଼େ।

ବିକାଶ ସେଇଆ ନୁହେଁ ତ ଆଉ କ'ଣ ? କେବଳ ସପ୍ତାହରେ ଶନିବାର ରବିବାର ଯାହା ଛୁଟି। ସେଥିରେ ଘରର ଯାବତୀୟ କାମ। ଲୁଗା କାଚିବା, Marketing କରିବା, ସପ୍ତାହର ସବୁ ବାକି କାମ, ରବିବାର ଦିନ କେଉଁଠି ନା କେଉଁଠି get together ଥିବ। ଫୁରସତ କାହିଁ ଯେ ମନଇଚ୍ଛାରେ ଖାଇବ କି ବଞ୍ଚିବ।

ପ୍ରକାଶ — ପୂରା ବ୍ୟସ୍ତ । ସବୁ ଯେମିତି ମେସିନ ଭଳି କରଯିବାକୁ ହୁଏ। ନିଜ ଇଛାରେ ନିଃଶ୍ୱାସ ନେବାକୁ ତର କାହିଁ ?

ପ୍ରଣତି — ଏମିତି କେତେଦିନ ଏ ଦେହକୁ ମେସିନ ଭଳିଆ ଚଳେଇ ପାରିବ। ଜୀବନଟା ଯଦି ଏମିତି କକୁର ଧାଉଡ଼ିରେ କଟିବ, ତା'ହେଲେ ସୁଖ ମିଳିବ କେବେ ?

ବିକାଶ — ବୁଝିଲୁ ପ୍ରଣତି, 'ଗତି ହିଁ ପ୍ରଗତିର ଲକ୍ଷଣ'।

ପ୍ରକାଶ — ପୁଣି କହନ୍ତି, 'କର୍ମ ହିଁ ଭଗବାନ', 'କର୍ମ ହିଁ ଜୀବନ'। ଖଟିବାରେ ଗୋଟିଏ ଅଲଗା ମଜା ଅଛି। ତା' ଛଡ଼ା ନ ଖଟିଲେ ଏତେ ଟଙ୍କା କିଏ କାହିଁକି ଆମକୁ ଦେବ ? ଆଜିକାଲି ଦୁନିଆଁରେ ଟଙ୍କା ହିଁ ମଣିଷକୁ ବଡ଼ କରିପାରେ। (ପ୍ରବେଶ କଲେ ଦିନେଶ)

ଦିନେଶ — ବହୁଦିନ ତଳେ ଗୋଟିଏ ଖବରକାଗଜରେ ବାହାରିଥିଲା, ଗୋଟିଏ ଗଧ ଉପରେ ଲୋକଟିଏ ବସି ଗୋଟିଏ ବାଡ଼ିରେ ଗାଜରଟିଏ ବାନ୍ଧି ଗଧର ମୁହଁ ଆଗରେ ତା'କୁ ଝୁଲେଇ ଧରିଛି ଆଉ ଗଧଟି ଗାଜରକୁ ଖାଇବାର ପ୍ରଚଣ୍ଡ ଲୋଭରେ ଆଗକୁ ଆଗକୁ ଧାଇଁ ଚାଲିଛି ଅଥଚ ଗଧ ଉପରେ ବସି ଲୋକଟି ହାଃ ହାଃ କରି ହସି ଚାଲିଛି। R.K. Narayan ଙ୍କର କାର୍ଟୁନ ଚିତ୍ର।

ଆରେ ସେତେବେଳୁ ବସି ଏଠି ଗପୁଛ ? ଶୀଘ୍ର ନିତ୍ୟକର୍ମ ସାରିଦିଅ ଜଳଖିଆ ଖାଇବା । ମୁଁ ଆଣିଛି ଗରମା ଗରମ ଦୋଷା । ଅଞ୍ଜୁ ନିଅ...

ଅଞ୍ଜଳୀ — (ପ୍ରବେଶୀ ବ୍ୟାଗ୍ ନେଲେ) ଆଜି ଦ୍ୱିପ୍ରହରରେ କିଏ କ'ଣ ଖାଇବ କୁହ ରୋଷେଇ ହେବ । (ଗୋଡ଼ରେ ନଜର ପଡ଼ିଲା) ଆରେ ଆରେ ତୁମ ଗୋଡ଼ଟା କ'ଣ ଫୁଲିଛି...

ପ୍ରକାଶ — ନାଇଁ ସେ କିଛି ନୁହେଁ - କାଲି ଚାଲୁଚାଲୁ ପାଦଟା ଟିକିଏ ମକଚି ଯାଇଥିଲା ତ ଫୁଲିଥିବ...

ପ୍ରଣତି — ଦେଖି ଦେଖି...ବାପା ଆର ପାଦଟା ବି ତ ଫୁଲିଛି ନା କ'ଣ...

ପ୍ରକାଶ — ଆରେ ସେଇଟା କଥା କହନା - ପିଲାଦିନୁ ଫାଇଲେରିଆ ଅଛି ତ। ଅମାବାସ୍ୟା, ପୂର୍ଣ୍ଣମୀ ଆସିଲେ ମଝିରେ ମଝିରେ ଫୁଲେ...ସେଇଟା କିଛି ନୁହେଁ...(ସମସ୍ତେ ସମସ୍ତଙ୍କୁ ଅନାଇଲେ) ଆରେ ମାଆ ପଚାରୁଛି ପରା ଦ୍ୱିପହରରେ କିଏ କ'ଣ ଖାଇବ ?

ପ୍ରକାଶ — ଆଜି ଡାଲମାଭାତ ଖାଇବାର ଇଛା, ଅନେକ ଦିନୁ ଖାଇନି ।

ବିକାଶ — ତା' ସାଙ୍ଗକୁ ବଡ଼ି ଭଜା, ପାମ୍ପଡ଼ ।

ପ୍ରଣତି — ତା' ସାଙ୍ଗକୁ ଶାଗ ଆଉ ଆଳୁ ଭରତା ।

ଅଞ୍ଜଳୀ — ହଉ ତୁ ଶୀଘ୍ର ନିତ୍ୟ କର୍ମ ସାରି ଶାଗ ବାଛିଦେବୁ ଯାଆ ।

ଦିନେଶ — ନା, ନା ତୁମେ ସବୁ ନିତ୍ୟକର୍ମ ଶେଷକର । ଆଉ ତାରି ଭିତରେ ମୁଁ ଶାଗ ବାଛି, କାଟି ଦେଉଛି । ତା'ପରେ ସମସ୍ତେ ମିଶି ଜଳଖିଆ ଖାଇବା ।

ପ୍ରଣତି — (ସମସ୍ତଙ୍କୁ ଅନେଇଛି) ବାପା ତୁମେ ଶାଗ ବାଛିବ, କାଟିବ ?

ଦିନେଶ — ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଦରକାର ପଡ଼ିଲେ ଶାଗଭଜା ବି ମୁଁ ରାନ୍ଧି ଦେଇପାରିବି । ଦେଖିବୁ ? (ପ୍ରକାଶ ଓ ବିକାଶକୁ)

ତୁମେ ଦି'ଜଣ ଗାଧୋଇବ ଯାଅ । (ଦୁହେଁ ପ୍ରସ୍ଥାନ)

ପ୍ରଣତି — ନା ମାନେ ଆଗରୁ ଆମେ କେବେ ଦେଖିନୁ ତ ?

ଅଞ୍ଜଳୀ — ସେତେବେଳେ କୁଟା ଖଣ୍ଡକୁ ଦି'ଖଣ୍ଡ କରୁନଥିଲେ । ସବୁବେଳେ ଅଫିସ ଆଉ ଅଫିସ । ଏବେ କିନ୍ତୁ ରିଟାୟାର୍ଡ଼ କଲା ପରେ ଘରକାମ କରିବାକୁ ଭାରି ଆଗଭର । ଶାଗ ବାଛିବେ, ପରିବା କାଟିବେ, ମାଛ ବାଛିବେ, ଦରକାର ପଡ଼ିଲେ ତରକାରୀ ବି ରାନ୍ଧିବେ ।

ଦିନେଶ — ପିଲାଦିନେ ମୋ' ମାଆ ମୋତେ ସବୁ ଶିଖିଇଥିଲେ । ସିଏ କହୁଥିଲେ ପୁଅ ପିଲା, ଝିଅ ପିଲା କିଛି ନାହିଁ। ସମସ୍ତଙ୍କର ସବୁ କାମ ଶିଖିବା ଉଚିତ୍ / ମାନେ ଯୋତା ସିଲେଇଠୁଁ ଚଣ୍ଡିପାଠ ପର୍ଯ୍ୟନ୍ତ ।

ପ୍ରଣତି — ମୁଁ କିନ୍ତୁ ବାହା ହେବା ପର୍ଯ୍ୟନ୍ତ, ମାଆ ମୋତେ ରନ୍ଧାରନ୍ଧି କିଛି ଶିଖେଇ ନଥିଲା । ବାହାଘର ପରେ ଶାଶୁଘରେ ମୁଁ କମ୍ ହଇରାଣ ହୋଇଛି । ମୋ' ଶାଶୁ କିନ୍ତୁ ଭଲ ମଣିଷ ବୋଲି ଧୀରେ ଧୀରେ ସବୁ ଶିଖି ପାରିଲି । ତଥାପି ବେଳେବେଳେ ମୋତେ ହଇରାଣ ହେବାକୁ ପଡୁଛି ।

ଅଞ୍ଜଳୀ — ତୁମେ ସବୁ ଭଲପାଠ ପଢୁଥିଲ । ତୁ ଏମ୍.ଏସ୍.ସି ପାଶ୍ କରି ବି.ଇ.ଡ଼ି କଲୁ । ଚାକିରି କଲୁ । ସାଙ୍ଗେ ସାଙ୍ଗେ ତୋ' ବାହାଘର ବି ହୋଇଗଲା । ରୋଷେଇବାସ ଶିଖିଥାନ୍ତୁ କେତେବେଳେ ?

ଦିନେଶ — ଶିଖିବାର ଆଗ୍ରହ ଥିଲେ ପାଠ ପଢୁ ବା ଚାକିରି କରୁ, ସେଥିରୁ ସମୟ ବାହାର କରି ସେ ଶିଖି ପାରିଥାନ୍ତା । ଅସଲ କଥା ହେଲା ସେତେବେଳେ ତା'ର ରୋଷେଇ ଶିଖିବାର ଆଗ୍ରହ ନଥିଲା । ଏବେ ବେକରେ ପଡ଼ିବାରୁ ବଳେଇ ଶିଖୁଛି ।

ପ୍ରଣତି — ସେ କଥା ସତ ଯେ ହେଲେ ମାଆ ବାଧ କରିଥିଲେ କ'ଣ ମୁଁ ଶିଖିନଥାନ୍ତି । ସବୁବେଳେ ଖାଲି ପାଠ ପଢ଼, ପାଠପଢ଼ । ଯେମିତି ପାଠପଢ଼ା ଛଡ଼ା ଦୁନିଆଁରେ ଆମ ପାଇଁ କିଛି କାମ ନ ଥିଲା ।

ଅଞ୍ଜଳୀ — ଆରେ ଝିଅ । ଯାଉନୁ ଗାଧୋଇ ପଡ଼ିବୁ ?

ପ୍ରଣତି — ଭାଇମାନେ ଆସନ୍ତୁ ।

ଦିନେଶ — ବିକାଶ କିନ୍ତୁ ପିଲାଦିନେ ଆଳୁ ଭଜା ଆଉ ଅଣ୍ଡା ଭଜା କରୁଥିଲା କାରଣ ସ୍କୁଲ, କଲେଜରୁ ଫେରିଲେ ପଖାଳ ଖାଇବାକୁ ଖୁବ୍ ଭଲ ପାଉଥିଲା ।

ବିକାଶ — (ପ୍ରବେଶୀ) ଆଉ ସେଇଥିପାଇଁ ମାଆଠାରୁ ଯଥେଷ୍ଟ ଗାଳି, ମାଡ଼ ବି ଖାଇଛି ।

ଦିନେଶ — (ପ୍ରଣତିକୁ) ଏଥର ତୁ ଯାଆ...(ପ୍ରଣତି ଗଲା)

ବିକାଶ — ହେଲେ ଭାଇକୁ ସେତେବେଳେ କିଛି କରି ଆସୁନଥିଲା ।

ଦିନେଶ — କାହିଁକି ଜାଣୁତ ?

ବିକାଶ — ସେ କିଛି କରିବାକୁ ଚାହୁଁଥିଲେ ବି ମାଆ ତାକୁ କିଛି କରେଇ ଦେଉନଥିଲା । ସେ ଥିଲା ମାଆର ଗେହ୍ଲା ପୁଅ ଆଉ ପ୍ରଣତି ଥିଲା ତୁମର ଗେହ୍ଲି ଝିଅ । ମୁଁ ତ ମଝି ମଝିକା, ନା ଏ କୁଳର ନା ସେ କୁଳର । ହେଲେ ଏବେ ସମୟ ବଦଳି ଯାଇଛି ବାପା ।

ଦିନେଶ — କେମିତି କେମିତି ?

ବିକାଶ — ଭାଇ ରୋଷେଇ କରୁଛି, ଲୁଗା କାଚୁଛି । ଘର କାମ ସବୁ ବି କରୁଛି ।

ଦିନେଶ — ସତେ ନା କ'ଣ ? ବାଃ... ଭେରୀ ଗୁଡ୍ ।

ପ୍ରକାଶ (ପ୍ରବେଶୀ। ହାତରେ ଲ୍ୟାପଟପ୍) ସେଇ ଅଣ୍ଡା ଆମଲେଟ ନହେଲେ ବ୍ରେଡ୍ ଆଉ ଚା' ଟିକେ ।

ବିକାଶ ଆଉ ଲୁଗା କାଚିବା ।

ପ୍ରକାଶ ସେଥିରେ ଆଉ କେଉଁ ବାହାଦୁରୀ କହିଲ ବାପା । ଓ୍ୱାସିଂଙ୍ଗ୍ ମେସିନ୍‌ରେ ପକେଇ ଦେଲେ ତ ଆପେ ସଫା ହୋଇ ବାହାରି ଆସିବ । ତୁ ତୋ' ଘରେ କାମ କରୁନୁ କି ?

ବିକାଶ ହଁ କରୁଛି । ମୁଁ କ'ଣ ମନା କରୁଛି । ମୁଁ ସେତେବେଳେ କରୁଥିଲି ଏବେ ବି କରୁଛି । ହେଲେ ତୁ ତ ମାଛି କି ମ କହୁନଥିଲୁ ହେଲେ ଭାଉଜ ତୋତେ ପୁରା ଟାଇଟ୍ କରିଦେଇଛନ୍ତି ।

ପ୍ରଣତି (ମୁଣ୍ଡ ପୋଛୁପୋଛୁ) ଆଉ ସାନ ଭାଉଜ ତୋତେ ପଙ୍ଖା ମାରି ଥଣ୍ଡା କରି ଭାତ ଖୁଆଉ ଥିବେ । ଦୋଳିରେ ଝୁଲେଇ ଝୁଲେଇ ଗପ କହୁଥିବେ, ନୁହେଁ?

ବିକାଶ ଓହୋ ଭଲ କଥା ମନେ ପକେଇ ଦେଲୁ । କେତେଟା ବାଜିଲାଣି ।

ପ୍ରଣତି ୯ଟା...

ବିକାଶ ରହ ରହ ମୁଁ ମୁଁ ଆସୁଛି (ଧାଇଁ ଧାଇଁ ଭିତରକୁ ଗଲା...)

ଦିନେଶ କୁଆଡ଼େ ଗଲା କେଜାଣି

ପ୍ରଣତି ଭାଉଜଙ୍କୁ ଫୋନ୍ କରିବ ବୋଧ ହୁଏ ।

ବିକାଶ (ପ୍ରବେଶୀ ହାତରେ ଫୋନ୍) ହଁ ହଁ ବିପି ଔଷଧ ଖାଇଲ ନା ନାହିଁ ? ଆଜି ବ୍ଲଡ୍ ସୁଗାର ଚେକ୍ କରିବାକୁ Blood ଦେଲ ନା ନାହିଁ? ସଞ୍ଜକୁ ଇଞ୍ଜେକସନ୍ ନେବ...ଆଉ ଶୁଣ ଅଫିସରେ ପହଞ୍ଚି ଅନ୍ ଲାଇନ୍‌ରେ ରହିବ ମୋର କାମ ଅଛି । ଆହା କେତେ କଥା ପଚାରୁଛ...ବହୁତ ଅଫିସିଆଲ ଡକ୍ୟୁମେଣ୍ଟ ମେସେଜ କରି ରିପ୍ଲାଏ ଦରକାର... ଟ୍ରେନ୍‌ରେ ଆସୁ ଆସୁ ସବୁ Read କରିଦେଇଛି ବାବା! ରହିଲି । ହଁ କ'ଣ କହିଲୁ ତୋ' ଭାଉଜ କଥା ତ? ତାକୁ ସମୟ କାହିଁ । ତା'ର କାମକମ୍ କି ?

ପ୍ରକାଶ ଠିକ୍ କହିଛୁ ପ୍ରଣତି । ଚାଲୁଣି କହୁଛି ଛୁଞ୍ଚ କି...

ଦିନେଶ କେହି କାହାକୁ ଦୋଷ ଦେଇ କିଛି ଲାଭ ନାହିଁ । ମୋ' ମତରେ କାମ କରିବାରେ ଝିଅ ପୁଅ କ'ଣ ? ଆରେ ଆମ ପିଲାଦିନେ ସବୁ କଥାରେ ସବୁ କାମରେ ପୁଅ ପିଲା ଆଗରେ ବାହାରୁଥିଲେ । କ୍ଲାସରେ ଫାଷ୍ଟ ହେଉଥିଲେ । ହେଲେ ଏଇନେ ସମୟ ବଦଳି ଗଲାଣି । ସ୍କୁଲ, କଲେଜ, ୟୁନିଭରସିଟି ସବୁଠି ଝିଅମାନେ ଆଗରେ। ଏବେ ଝିଅମାନେ ପରା ଫାଇଟର୍ ଜେଟ୍ ଚଳେଇଲେଣି ।

ବିକାଶ ଦେଖିଲୁ ଭାଇ ମୁଁ ଟିକିଏ ତୋତେ ଚିଡ଼େଇ କହିଲି ବୋଲି ସମସ୍ତେ ତୋ' ସପକ୍ଷରେ ବାହାରିଲେଣି ।

ପ୍ରଣତି ତାକୁ କ'ଣ କିଛି ଶୁଭୁଥିବ...କାନରେ ତ ହେଡ୍‌ଫୋନ୍ ଗୁଞ୍ଜି ବସିଛି...

ପ୍ରକାଶ ଶୁଭୁଛି ଶୁଭୁଛି ଆରେ ଆମେ ତ ଆଉ ତୋ' ଭଳି ଶିକ୍ଷକ ଚାକିରି କରିନୁରେ କେବଳ ପାଠ ଉପରେ Concentrate କରି ପିଲାଙ୍କୁ ପାଠ ପଢ଼ାଇବୁ । ଆମେ ଆମ ବ୍ରେନ୍‌କୁ ଡିଭାଇଡ୍ କରିଦେଇଛୁ। ଆମ ହାତ ଯେମିତି ଲ୍ୟାପଟପ୍ ଉପରେ ଫିକ୍ସ ହୋଇଯାଇଛି ସେମିତି କାନ ତା' କାମ କରୁଛି ତ ପାଟି ତା' କାମ କରୁଛି । ହେଲେ ଲ୍ୟାପଟପ୍ ଉପରୁ ହାତ କିନ୍ତୁ ଉଠିବ ନାହିଁ । ନହେଲେ ଚାକିରି ଉପରେ ତା'ର କୁପ୍ରଭାବ ପଡ଼ିବ। ଇଯେ ହେଲା କରର୍ପୋରେଟ୍ ଚାକିରି...ଏଠି ଆଗ ଅଫିସ କାମ ତା'ପରେ ଅନ୍ୟ କଥା...ଆରେ କାମ କଥା ତ ପଛକୁ ଆମକୁ ନିଶ୍ୱାସ ନେବାକୁ

ବି ଡର ନାହିଁ । ଆରେ ସେ କ'ଣ କହିବ ମୁଁ କହୁଛି ଶୁଣ, ସେ ପରା ଆମର ଦଣ୍ଡାବାଲୁଙ୍ଗା ଥିଲା । ବୁଝିଲ ବାପା ତୁମର ଏଇ ଦଣ୍ଡାବାଲୁଙ୍ଗା ଫରେନ୍ ଯିବାକୁ ବାହାରିଲାଣି । କହୁନୁ କହ...

ଦିନେଶ ଭେରି ଗୁଡ୍, ଆଉ ଲିସା, ସିଏ ତୋ' ସାଙ୍ଗରେ ଯିବ ନା ସିଏ ଇଣ୍ଡିଆରେ ରହିବ ।

ବିକାଶ ସେମିତି କିଛି ଠିକ୍ ହୋଇନି, ତେବେ ଗଲେ ଆମେ ଦି'ଜଣ ଯିବୁ ।

ଅଞ୍ଜଳୀ କେତେ ଦିନ ପାଇଁ ।

ବିକାଶ ଦୁଇ ବର୍ଷ ପାଇଁ ।

ପ୍ରଣତି ତା'ପରେ ଫେରିବୁ ନା ସେଇଠି ସେଟେଲ୍ ହୋଇଯିବୁ ?

ବିକାଶ ଏବେ ସେକଥା ଚିନ୍ତା କରି ଲାଭ କ'ଣ ? ଆଗେ ଯାଇ ସାରେ, ତା'ପରେ ଫେରିବା ଚିନ୍ତା କରିବି ।

ପ୍ରଣତି ଫେରିବୁ ନା ଆଉ କିଛି । ତୋରି ଭଳିଆ କେତେ ଲୋକ ଯାଇ ଫେରିବାକୁ ରାଜି ହୋଇ ନାହାଁନ୍ତି ।

ଦିନେଶ ବୟସ ଗଡ଼ିଗଲା ପରେ ଅନେକ କିନ୍ତୁ ଫେରି ଆସିବାକୁ ପସନ୍ଦ କରୁଛନ୍ତି ।

ପ୍ରଣତି ବାଧରେ ପଡ଼ି ।

ଦିନେଶ ହଁ...ହୁଏତ ନିର୍ଜନତାଠାରୁ ମୁକ୍ତି ପାଇବା ପାଇଁ ।

ବିକାଶ ଭାଇ, ଭାଉଜ ବି ତ ବାହାରକୁ ଯିବାକୁ ଚେଷ୍ଟା କରୁଛନ୍ତି । ପଚାରୁନ ?

ପ୍ରକାଶ ହଁ । ଏଥିରେ ଅସୁବିଧା କ'ଣ ? (ପ୍ରଣତିକୁ) ସୁଯୋଗ ପାଇଲେ ତୁ କ'ଣ ବିଦେଶ ଯିବାକୁ ଚାହିଁବୁ ନାହିଁ ?

ପ୍ରଣତି କ'ଣ ମାଷ୍ଟର ଚାକିରି କରିବାକୁ ?

ପ୍ରକାଶ ହଁ...ଦୁବାଇ ଆଉ ଆରବ କଣ୍ଟ୍ରିରେ ବିଜ୍ଞାନ ଶିକ୍ଷକତା ପାଇଁ ଆଡ୍ ସବୁ ବାହାରୁଛି । ଏପ୍ଲାୟ କରୁନୁ କ୍ୱାଲିଫିକେଶନ୍ ଆଉ ଏକ୍ସପିରିଏନ୍ସ ତ ତୋର ଅନେକ ଅଛି । ନିଶ୍ଚୟ ମିଳିଯିବ । ଅସୁବିଧା କ'ଣ ?

ଅଞ୍ଜଳୀ ଆଉ ଜ୍ୱାଇଁ । ତା' ପିଲାମାନେ ।

ପ୍ରକାଶ ଜ୍ୱାଇଁ ଡାକ୍ତର । ସେ ବି ସେଇଠି ଚାକିରି କରିବେ ନ ହେଲେ ପ୍ରାକ୍ଟିସ୍ କରିବେ । ପିଲାମାନେ ସେଇ ସ୍କୁଲରେ ପଢ଼ିବେ ।

ଅଞ୍ଜଳୀ ଆଉ ଆମେ । (ସମସ୍ତେ ନିରବ) ତମେ ସମସ୍ତେ ବିଦେଶ ଚାଲିଯିବ ଆଉ ଆମେ କ'ଣ ଜଳକା ହୋଇ ଏଇଠି ବସି ରହିଥିବୁ, ମୃତ୍ୟୁକୁ ଅପେକ୍ଷା କରି ?

ଦିନେଶ (ହସିହସି) ଆରେ ତୁମେ ସେମିତି ଭାବୁଛ କାହିଁକି ? ମଝିରେ ମଝିରେ ଆମେ ବି ସେମାନଙ୍କ ପାଖକୁ ବୁଲିଯିବା । ସାରା ପୃଥିବୀ ବୁଲିବା । ଅସୁବିଧା କ'ଣ ? ଜଣ ଜଣକ ପାଖରେ ଦି' ଦି' ମାସ ରହି ଆସିବା । ବ୍ୟସ୍ତ ହେଉଛ କାହିଁକି ?

ଅଞ୍ଜଳୀ ଦି' ଦି' ମାସ ରହି ଆସିବା କଥା କହୁଛ । ମୋତେ ବୁଦ୍ଧି ଶିଖାଉଛ । ବାକି ଛ'ମାସ କ'ଣ କରିବା ? ଏଇଠି ଏଇ ଘରେ ବୁଢ଼ାବୁଢ଼ୀ ଦୁଇଟା, ହାତ ଚଳୁନଥିବ କି ପାଦ ଚଳୁନଥିବ ।

ଦିନରାତି ୨୪ ଘଣ୍ଟା ଏଇ ଝରକା ପାଖରେ ବାହାରକୁ ମୁହଁ କାଢ଼ି ଜୁଲୁଜୁଲିଆ ପୋକ ଭଳି ଜୁଳୁଜୁଳୁ କରି ରାସ୍ତାକୁ ଅନେଇ ବସିଥିବୁ । କାଉ କୋଇଲଟିଏ ପାଖରେ ନଥିବ ଆହା ପଦେ କହିବା ପାଇଁ । ପାଟିରେ ଟିକିଏ ଔଷଧ କି ପଥ୍ୟ ଦେବା କଥା ଛାଡ଼, ଟୋପାଏ ପାଣି ଦେବାକୁ ବି କେହି କୁଆଡ଼େ ନ ଥିବେ । (କାନ୍ଦିବେ)

ଦିନେଶ — ତୁମେ ତୁଚ୍ଛା କଥାରେ କାନ୍ଦୁଛ କାହିଁକି କହିଲ - ତୁମେ କ'ଣ ଭାବୁଥିଲ ବୁଢ଼ାକାଳେ ତୁମ ଚାରିପଟେ ପୁଅ, ଝିଅ, ନାତି, ନାତୁଣୀ, ଘେରି ରହିଥାନ୍ତେ ? ଆଉ ତୁମେ ଅଜା ଆଈ ସାଜି ସଂଜବେଳେ ପାକୁଆ ପାଟିରେ ପାନଗୁଆ ଜାକି, ତାଙ୍କୁ ବସେଇ ପରୀ ରାଇଜର କାହାଣୀ ଶୁଣାଉଥାନ୍ତ ? ନାନାବାୟା ଗୀତ ଗାଇ ଶୁଆଇ ପକାଉଥାନ୍ତ ? ଆରେ ଅଞ୍ଜଳୀ, ସେକାଳ ପଖାଳ ଏବେ ସାତ ସପନ ହେଲାଣି । ତୁମେ କ'ଣ ଭାବୁଛ ଯେ ବୁଢ଼ା କାଳକୁ ତୁମେ ଗୋଡ଼ ଲମ୍ବେଇ ଦେଇ ବସନ୍ତ ଆଉ ବୋହୂମାନେ ତେଲ ଗରମ କରି ତୁମର ଧୁକୁଡ଼ା ପାଦକୁ ମାଲିସ୍ କରିଥାନ୍ତେ ?

ଅଞ୍ଜଳୀ — ଯାଃ, ଯାଃ... ସେଥିପାଇଁ ପରା ମୁଁ ଗୋଡ଼ ଲମ୍ବେଇ ବସିଛି । ତୁମେ ଦେଖି ପାରୁନ ପରା ।

ଦିନେଶ — ତା'ହେଲେ ତୁମେ କ'ଣ କହୁଛ ? ସେମାନେ ଚାକିରି ନ କରି ତୁମ ପାଖରେ ବସି ରହନ୍ତେ ? ଆରେ ଏଇଟା ଖଟିବା ବୟସ, ପଇସା ରୋଜଗାର କରିବାର ବୟସ । ଏବେ ଖଟିବେନି, ରୋଜଗାର କରିବେନି ତ କ'ଣ ବୁଢ଼ାବୁଢ଼ୀ ହେଲେ ଖଟିବେ ?

ଅଞ୍ଜଳୀ — ତୁମେ ମୋତେ ଆଉ ସେ ଭାଗବତ ପଢ଼ାଅନା । ସେକଥା ମୁଁ ଜାଣେ । ଚାକିରି କରି ପଇସା ରୋଜଗାର କରିବ ବୋଲି ଜୀବନରେ ସୁଖ ଶାନ୍ତି ବୋଲି କିଛି ନାହିଁ । ବାପା, ମାଆ, ଭାଇ ବନ୍ଧୁ, କୁଟୁମ୍ବ ସବୁକୁ ପର କରିଦେବ ? ତୁମେ ତ ପୁଣି ଚାକିରି କରିଥିଲ ? ଏ ସହରର ସମସ୍ତେ ତ ପୁଣି ଚାକିରି କରୁଛନ୍ତି ନା ନାହିଁ ? ସମସ୍ତେ ଖାଲି ଫରେନ୍ ଯାଇ ପଇସା ରୋଜଗାର କରୁଛନ୍ତି ନା ସମସ୍ତେ ତାଙ୍କ ବାପା ମାଆଙ୍କୁ ପଛକୁ ଫୋପାଡ଼ି ଦେଉଛନ୍ତି ।

ଦିନେଶ — ଓ ହୋ...ଯାହାହେଉ ୧୨ ବର୍ଷ ପରେ କୁମ୍ଭୀର ଶେଷରେ ଓକାର କଲା ।

ପ୍ରକାଶ — କ'ଣ ହେଲା କି ବାପା ?

ଦିନେଶ — ଶୁଣିଥିଲି ୧୨ ବର୍ଷ ଧରି ଖାଇଥିବା ଜନ୍ତୁଜନ୍ତାଙ୍କ କଙ୍କାଳ କୁମ୍ଭୀର ବାନ୍ତି କରି ବାହାର କରିଦିଏ । ସେମିତି ଏତେ ଦିନ ପରେ ତୋ' ମାଆ ସତ କହିଲା । ଏଇ ଦିନକୁ ପରା ମୁଁ ଚାହିଁ ବସିଥିଲି ।

ବିକାଶ — ମାଆ ଏମିତି କ'ଣ କହିଲା କି ?

ଦିନେଶ — ଶୁଣି ପାରିଲୁନି ବୋଧହୁଏ । ମଲା ବେଳେ ହନୁ ସତ କହିଲା ଭଳିଆ ନିଜ ଉପରେ ପଡ଼ିଲା ବେଳକୁ, ପୁଅବୋହୂ, ଝିଅଜ୍ୱାଇଁଙ୍କୁ ଉପଦେଶ ଦେବାକୁ କିମିତି ଅଣ୍ଟା ଭିଡ଼ି ବାହାରି ପଡ଼ିଲା ।

ଅଞ୍ଜଳୀ — କଅଣ ନିଜ ଉପରେ ପଡ଼ିଲା ଶୁଣେ ? କହୁନ କୁହ ।

ଦିନେଶ — ଭାତହାଣ୍ଡିରୁ ଗୋଟିଏ ଚିପିଲେ ଜଣାପଡ଼େ ପରା, ସବୁ କଥା କହିବା ଦରକାର କ'ଣ ?

ଅଞ୍ଜଳୀ — କାହିଁକି ପୁରା ମହାଭାରତ ପଢୁନ । ଅଠର ଅଧ୍ୟାୟ ପଢ଼ । ମୁଁ ଶୁଣିବାକୁ ପ୍ରସ୍ତୁତ ଅଛି ।

ଦିନେଶ — କଅଣ ଆଉ କହିବି । ନିଜ ବୋହୂ ବେଳ କଥା ମନେ ପକାଅ, ସବୁ ଜାଣିପାରିବ, ବୁଝିପାରିବ । କଥାରେ ନାହିଁ ଯିଏ ଯେ ଗାତ ଖୋଳେ ସେଇ ଗାତରେ ପଡ଼େ । ଟେକାଟିଏ ପକେଇଥିଲେ ପରା ପଥରଟିଏ ଥୁଆ ।

ଅଞ୍ଜଳୀ କ'ଣ କହିଲ ଟେକା ପକେଇଲି କାହାକୁ ତୁମ ବାପା ବୋଉଙ୍କୁ । କ'ଣ ଗାତ ଖୋଳିଲି କାହା ପାଇଁ ଖୋଳିଲି । ମୋର ତ କିଛି ମନେ ପଡୁନି । ତୁମର ମନେଅଛି ଯଦି ଗୋଟି ଗୋଟି କରି ଖୋଲି କହୁନ । ଗଣ୍ଠି କରି ରଖିଛ କାହିଁକି ?

ପ୍ରଣତି ମାଆ ତୁ ଭିତରକୁ ଚାଲିଲୁ । ଚାଲ...

ଅଞ୍ଜଳୀ ଦେଖୁଛୁ ତ ତୋ' ବାପାଙ୍କ କଥା । କେଉଁ କାଳ କଥା ମନେରଖି ଖୁଣ୍ଟଣା ଦେଉଛନ୍ତି । କେବେ ମୁଁ କ'ଣ କରିଥିଲି, କି କାହାକୁ କ'ଣ କହିଥିଲି । ସେକଥାକୁ ଗଣ୍ଠି କରି ଆଜି କହୁଛନ୍ତି ।

ଦିନେଶ ମନେ ନାହିଁ ନା ମନେ ପକେଇବାକୁ ଚାହୁଁନ ?

ବିକାଶ ଛାଡ଼ ବାପା ସେକଥା...ପୁରୁଣା କଥାକୁ ଘାଣ୍ଟି ଲାଭ କ'ଣ ? ପ୍ରଣତି ! ମାଆକୁ ନେଇ ଭିତରକୁ ଗଲୁ...(ପ୍ରଣତି ଓ ଅଞ୍ଜଳୀର ପ୍ରସ୍ଥାନ)

ମାଆ ତ ସେମିତି କଥା ସମସ୍ତଙ୍କୁ କହେ ହେଲେ ତା' ମନରେ କିଛି ଗଣ୍ଠି ନଥାଏ ।

ପ୍ରକାଶ ସେ ଆମ ସମସ୍ତଙ୍କୁ ବହୁତ ଭଲପାଏ ସେଇଥିପାଇଁ ଭଲମନ୍ଦ କହିଦିଏ । ଛାଡ଼ ସେ କଥା...ହେଲେ ତୁମେ ଆମ ସମସ୍ତଙ୍କୁ ଏମିତି ହଠାତ୍ ଡାକି ପଠାଇବାର କାରଣଟା ତ ଆମେ କିଛି ବୁଝିପାରୁନୁ ।

ଦିନେଶ ଏତେ ବ୍ୟସ୍ତ କାହିଁକି ହେଉଛ । କହିବି ବୋଲି ତ ଡାକିଛି, ଖାଇ ପିଇ ଆଗେ ବିଶ୍ରାମ ନିଅ । ମୁଁ ବଳେ କହିବି ନାହିଁ ? ସମୟ ହେଲେ ସବୁ କହିବି ।

ପ୍ରକାଶ ମାଆ ଉପରେ ରାଗି ଆମକୁ ଆଉ ଡକେଇନ ତ ?

ଦିନେଶ ତୋ' ମାଆ ମୋ' ସହିତ ପାଟିତୁଣ୍ଡ କରିବା କ'ଣ ଆଜି ନୂଆ । ପିଲାବେଳେ ଦେଖିନଥିବ କି ? ସେଇଥିପାଇଁ ତୁମକୁ ଡକାଇ ପଠାଇବି କାହିଁକି ?

ବିକାଶ ମୋତେ କହିଲ ଜରୁରୀ କଥା ଅଛି । ଜରୁରୀ କଥା ଆଉ କ'ଣ ହୋଇପାରେ ? କୁହନା ବାପା ।

ଦିନେଶ (ହସି) ଓପର ବେଳା ଅସିତ ଆସିବ । ସେତେବେଳେ ସବୁ ଜାଣିପାରିବ । ଏବେ ଚାଲ ଜଳଖିଆ ଖାଇବା ଭାରି ଭୋକ ହେଲାଣି । (ସମସ୍ତେ ସେଠାରୁ ଚାଲି ଅନ୍ୟ ଏକ କୋନ୍‌କୁ ଯିବେ ଓ ବସିଲେ) ପ୍ରଣତି ! ଆରେ ସମସ୍ତଙ୍କ ପାଇଁ ଦୋସା ଆଣିଲୁ । (ପ୍ରଣତି ଦୋସା ଆଣିଦେଲା ।)

ପ୍ରକାଶ (ଦେଖି) ଏଇଟା କ'ଣ ମସଲା ଦୋସା ? ପ୍ରଣତି ତା' ଭିତରୁ ଆଳୁ ମସଲା ବାହାର କରି ନେଇଯା ।

ଦିନେଶ କାହିଁକି ? ତୋର କ'ଣ ଡାଇବେଟିସ୍ ବାହାରିଲାଣି କି ?

ପ୍ରକାଶ ଏଇ ଏବେ ଏବେ ବାହାରିଛି । ଡାକ୍ତର କହିଛନ୍ତି ଖାଇବା ରେଷ୍ଟ୍ରିକ୍‌ସନ୍ କରିବାକୁ ।

ଦିନେଶ ଆମ ବଂଶରେ ତ କାହାକୁ ଏ ରୋଗ ନଥିଲା ।

ବିକାଶ ମୋର ବି । ମସଲା ବାହାର କରିଦେ ।

ପ୍ରଣତି ତୋର ବି ଡାଇବେଟିସ୍ ନା କ'ଣ ?

ବିକାଶ ନା ମୋର ବ୍ଲଡ଼ପ୍ରେସର୍ ବାହାରିଛି ତ ? ମିଠା, ଆଳୁ ଆଦି କମ୍ ଖାଉଛି କାଳେ ମୋର ବି, ଡାଇବେଟିସ୍ ବାହାରିବ ।

ଦିନେଶ ଆରେ ମୂର୍ଖ । ଆଳୁ କି ମିଠା ଖାଇଲେ ଡାଇବେଟିସ୍ ହୁଏ ନାହିଁ ବରଂ ଡାଇବେଟିସ୍ ହେଲେ ମିଠା ଆଉ ଶର୍କରା ଜାତୀୟ ଖାଦ୍ୟ ଖାଇବା ମନା । ଖାଇଦେ । କିଛି ହେବନି । ତେବେ ମୁଁ ଆଶ୍ଚର୍ଯ୍ୟ ହେଉଛି ଯେ ଆମ ବଂଶରେ ଆଗରୁ କାହାକୁ ଏ ରୋଗ ନଥିଲେ ମଧ ଏତେ କମ୍ ବୟସରୁ ତୁମର ଏ ରୋଗ ସବୁ ହେଲା କାହିଁକି ?

ପ୍ରଣତି ଏକଚୁୟେଲି ଏ ରୋଗ ପାଇଁ ଏମାନେ ନିଜେ ସବୁ ଦାୟୀ । ଏମାନଙ୍କର ଜବ୍ ପ୍ରେସର୍, ଲାଇଫ୍ ଷ୍ଟାଇଲ୍ ଆଉ ଫୁଡ୍ ହ୍ୟାବିଟ୍ ପାଇଁ ଏସବୁ ବାହାରିଛି ।

ଦିନେଶ ତୁ ଠିକ୍ କହିଛୁ । ରାତିରେ ଲେଟ୍ ନାଇଟ୍ ପର୍ଯ୍ୟନ୍ତ ଚେଇଁ ରହିବେ । ପ୍ରତିଦିନ ତିନି ଓଳି ଜଙ୍କ ଫୁଡ୍ ଖାଇବେ । ଅଫିସରେ ଦିନସାରା ଲ୍ୟାପଟପ୍ କିମ୍ବା କମ୍ପ୍ୟୁଟର ଆଗରେ ବସି ବସି କାମ କରିବେ । ଶାରୀରିକ ପରିଶ୍ରମ ନାହିଁ କି, ବିଶ୍ରାମ ବି ନାହିଁ । ସୁଖ ଅଛି ନା ଶାନ୍ତି । ଏମିତି ଜୀବନଚର୍ଯ୍ୟାରେ ମନରେ କ୍ଲାନ୍ତି ଆସିବ, ବିଷାଦ ଆସିବ, ତା'ପରେ ଦେହ ଖରାପ ହେବା କଥା ହେବ ଏଥିରେ କିଏ କ'ଣ କରିବ । ଆରେ ସେ ବିଷୟରେ ତୁମେ ଟିକିଏ ସଚେତନ ହୁଅ । ନିଜ ଦେହପାକୁ ଜଗିରଖି ଚଳ ।

ପ୍ରକାଶ ବାପା ! କହୁଛ ଯେ, ହେଲେ ଅଫିସ କାମ ତ ଏମିତି ସମସ୍ତେ କରୁଛନ୍ତି । ସମସ୍ତେ ସେମିତି ଖଟୁଛନ୍ତି, ସେମିତି ଚଳୁଛନ୍ତି । ସେମାନଙ୍କ ସାଙ୍ଗରେ ତାଳ ଦେଇ ଆମେ ଯଦି ଖଟି ନ ପାରିବା ଆମେ ପଛେଇ ଯିବା । କମ୍ପାନି ଅଯଥାରେ ଆମକୁ ଲକ୍ଷ ଲକ୍ଷ ଟଙ୍କା ଦେବ କାହିଁକି ? ଆମ ଜାଗାରେ ଯିଏ ଅଧିକ ଖଟିପାରିବ ତାକୁ ରଖିବ ନା ଆମକୁ ରଖିବ କହୁନ ?

ବିକାଶ ବାପା ଆମେ କର୍ପୋରେଟ୍ ଚାକିରି କରୁଛୁ । ଏଠି ଯେତେ ଫାଷ୍ଟ ହେବ, ସ୍ମାର୍ଟ୍ ହେବ, ଯେତେ ଆଉଟ୍‌ପୁଟ୍ ଦେଇପାରିବ ସେତେ ପ୍ରମୋଶନ ମିଳିବ ନହେଲେ ଚାକିରିରୁ ଛଟେଇ । ଏଇଟା ସରକାରୀ ଚାକିରି ହୋଇନି ଯେ କାମ କର ନ କର ମାସ ଶେଷକୁ ଦରମା ଥୁଆ । ଆଉ ଟେଲେଣ୍ଟ ଥାଉ ନ ଥାଉ ସିନିୟରିଟି ଆସିଲେ ପ୍ରମୋଶନ ମିଳିବା କଥା ମିଳିବ ନହେଲେ କୋର୍ଟ କଚେରୀ କରିବ । ସେଠି ସେ କଥା ନାହିଁ କି ସେ ସୁବିଧା ନାହିଁ । ତେଣୁ ଚାକିରି କରିବ ମାନେ ଖଟିବାକୁ ବାଧ୍ୟ ।

ଦିନେଶ ଠିକ୍ କଥା ଖଟିବାକୁ ମୁଁ ମନା କରୁନି । ଏଇଟା ଖଟିବାର ବୟସ ପଇସା ରୋଜଗାର କରିବାର ବୟସ, ତା' ବୋଲି ଦିନରାତି ମାନିବ ନହିଁ, ଖାଦ୍ୟ ଅଖାଦ୍ୟ ବାରିବ ନାହିଁ । ଚଳିବ କେମିତି, ସୁଖ ଶାନ୍ତି ପାଇବ କେମିତି ? ଚାକିରି କରି କ'ଣ ରୋଗ କିଣିବ ?

ପ୍ରକାଶ ସପ୍ତାହର ଶେଷ ଦୁଇ ଦିନ ଛୁଟି ସେଥିରେ ବିଶ୍ରାମ ନିଅ, ମଉଜ ମଜଲିସ୍ କରି ଯେତେ ଇଚ୍ଛା ସେତେ ଖୁସି ମନାଅ ଚିନ୍ତା ନାହିଁ । କିନ୍ତୁ ବାକି ପାଞ୍ଚ ଦିନ ଗଧ ଭଳି ଖଟିବାକୁ ପଡ଼ିବ ।

ବିକାଶ ବାପା...ସେଠି "ଗତି ହିଁ ପ୍ରଗତିର ଲକ୍ଷଣ" ସେଇ ନ୍ୟାୟରେ ଧାଇଁବାକୁ ପଡ଼ିବ ।

ଦିନେଶ କିନ୍ତୁ ଲଗାତାର କ୍ଷମତାଠାରୁ ଅଧିକ ବେଗରେ ଧାଇଁବା ଅନେକ ସମୟରେ ଦୁର୍ଘଟଣାର କାରଣ ପାଲଟିଯାଏ । ସେକଥା ଯେମିତି ଭୁଲିନଯାଅ ।

ପ୍ରକାଶ ତା'ହେଲେ କ'ଣ ଚାକିରି ଛାଡ଼ି ଘରେ ବସି ଦାରିଦ୍ର୍ୟର ଶିକାର ହେବା ?

ଦିନେଶ ସେ କଥା ମୁଁ କହୁନି ତେବେ କଠିନ ପରିଶ୍ରମ ସହିତ ବିଶ୍ରାମ ଏବଂ ଅର୍ଥ ଉପାର୍ଜନ ସମୟରେ ମାନସିକ ଶାନ୍ତି କଥା ଯେମିତି ଭୁଲି ନ ଯାଅ ।

ବିକାଶ ହେଲେ କରିବା କ'ଣ ମାନସିକ ଶାନ୍ତି କ'ଣ ପଇସା ଦେଇ କିଣି ହେବ ଯେ ଆମେ କିଣି ଆଣିବା ?

ଦିନେଶ ସେଥିପାଇଁ ନିଜକୁ ପ୍ରସ୍ତୁତ କରିବାକୁ ପଡ଼ିବ । ଦୈନନ୍ଦିନ କିଛି ସମୟ ପାଇଁ ଯୋଗ, ବ୍ୟାୟାମ ଆଉ ଧ୍ୟାନ ତଥା ପ୍ରାଣାୟାମ କରିବାକୁ ପଡ଼ିବ ।

ପ୍ରଣତି କାହାକୁ କ'ଣ ଯେ କହୁଛ । କିଏ ସିନା ଶୁଆଶାରୀକୁ ରାମ ନାମ ଶିଖାଏ ତୁମେ ତ ବାଇଚଢ଼େଇକୁ ରାମ ନାମ ଶିଖେଇବା ଆରମ୍ଭ କଲଣି । ଛାଡ଼ ଛାଡ଼ ଚା' ପିଇବ କି ?

ଦିନେଶ ଯା' ତୋ' ମାଆକୁ କହି ସମସ୍ତଙ୍କ ପାଇଁ ଲେମ୍ବୁ ପକେଇ ନାଲି ଚା' କରିଆଣିବୁ ।

ପ୍ରଣତି ମାଆକୁ କହିବି ? କ'ଣ ଗାଳି ଶୁଣିବାକୁ ? ତା' ମୁହଁ ତ ପୁରା ଭାରି ହୋଇ ରହିଛି ।

ଦିନେଶ କଳାହାଣ୍ଡିଆ ମେଘ ଭଳି । କେତେବେଳେ ଅସରାଏ ବର୍ଷି ଦେବ ତା'ର ଠିକଣା ନାହିଁ । ଆରେ ଯେତେ ଜଲ୍‌ଦି ବର୍ଷି ଦିଏ ଭଲ, ନହେଲେ ଯେ ପର୍ଯ୍ୟନ୍ତ ଅସରାଏ ଦି' ଅସରା ନ ବର୍ଷିଛି, ସେ ପର୍ଯ୍ୟନ୍ତ ବିଜୁଳି ମାରି ଘଡ଼ ଘଡ଼ି, ଚଡ଼ ଚଡ଼ି କରି ପୃଥିବୀ ଉଛନ୍ନ କରିବ । ଯାଆ ଯାଆ...

ପ୍ରଣତି ନା ବାବା ନା, ମୋର ତାକୁ ପ୍ରାଣେ ଡର । ମୋର ତାକୁ କହିବା ଦରକାର କ'ଣ ? ମୁଁ କ'ଣ ନିଜେ ଚା କରି ଆଣିପାରିବି ନାହିଁ ? (ଭାଇମାନଙ୍କୁ) ତୁମେ ସବୁ କି ଚା' ପଇବ କୁହ ?

ପ୍ରକାଶ ନାଲି ଚା' ହେଲେ ଚଳିବ, ମିଠା କମ୍ ଦେବୁ ।

ଦିନେଶ ନାଇଁ ନାଇଁ ତୁ ରହ । ମୁଁ ଯାଉଛି ଚାକିରି ଆଣିବି । ଝଡ଼ଝଞ୍ଜା ଆସୁ, କି ବିଜୁଳି ମାରି ବର୍ଷା ବରଷୁ, ସେ କଥା ମୁଁ ସମ୍ଭାଳିବି । ତୁମେ ଭାଇ ଭଉଣୀ ବସି ଏଠି ଗପସପ ହେଉଥା...(ପ୍ରସ୍ଥାନ ଉଦ୍ୟତ)

ପ୍ରଣତି ହେଲେ ସେଠି ମାଆ ସାଙ୍ଗରେ ଆଉ ପାଟିତୁଣ୍ଡ କରିବ ନାହିଁ । ମୋ' ରାଣ । (ଦିନେଶର ପ୍ରସ୍ଥାନ) ଦେଖୁଛୁ ଭାଇ ବାପାଙ୍କ କଥା । କ'ଣ କିଛି ବୁଝିପାରୁଛୁ ?

ବିକାଶ ରିଟାୟାଡ଼ ପରେ ବାପା ଟିକେ ଡିଫରେଣ୍ଟ ହୋଇଯାଇଛନ୍ତି ।

ପ୍ରକାଶ ବାପାଙ୍କୁ ପଚାରିଥିଲି କାହିଁକି ଡାକିଛ ? କହିଲେ ସମୟ ଆସିଲେ ଜାଣିବ ।

ବିକାଶ କିନ୍ତୁ ବାପା ମାଆଙ୍କର କଥାବାର୍ତ୍ତାରୁ ତ ସେମିତି କିଛି କ୍ଲିୟରଲି ବୁଝାପଡୁନି ଯେ ସେମାନଙ୍କ ଭିତରେ ଜବରଦସ୍ତ ଝଗଡ଼ା ହୋଇଥିବ ବୋଲି । ଯା ଭିତରେ ଆଉ କିଛି ରହସ୍ୟ ରହିଥାଇପାରେ ।

ପ୍ରଣତି ମୁଁ ବି ମାଆକୁ ପଚାରିଥିଲି, କହିଲା କେଜାଣି କାହିଁକି ଡକେଇଥିବେ। କେତେ ଥର ପଚାରିଲିଣି ମୋତେ କ'ଣ ସେ କିଛି କହୁଛନ୍ତି।

ପ୍ରକାଶ କିନ୍ତୁ ବାପା ସେତେବେଳେ ମାଆକୁ ଯେଉଁ କଥା କହିଲେ ଶୁଣିଲୁଟି...

ପ୍ରଣତି କେଉଁ କଥା... ?

ପ୍ରକାଶ ବାପା କହିଲେନି ତୁମ ବୋହୂ ବେଳ କଥା ମନେ ପକାଅ ସବୁ ବୁଝିପାରିବ ।

ପ୍ରଣତି ହଁ ହଁ...

ବିକାଶ ସେ କଥା ଶୁଣି ମାଆର ମୁହଁ ତ କେମିତି ନାଲି ପଡ଼ିଗଲା । କିନ୍ତୁ କାହିଁକି ?

ପ୍ରକାଶ ସେମିତି କିଛି କଥା ହୋଇନଥିଲେ ମାଆର ରିଆକ୍‌ସନ୍ ସେମିତି ହେବା କଥା ନୁହେଁ ।

ବିକାଶ ଆମ୍ ପିଲାବେଳେ ତ ସେମିତି କିଛି ଘଟଣା ଆମର ମନେ ପଡୁନି ।

ପ୍ରକାଶ ସ୍କୁଲ ଜୀବନ ପରେ ତ ଆମେ ସବୁବେଳେ ବାହାରେ ବାହାରେ ହଷ୍ଟେଲରେ ରହି ପାଠ ପଢ଼ିଲୁ । ଘର କଥା ଜାଣିବୁ କେମିତି ଓ ପ୍ରଣତି ହୁଏତ କିଛି ଜାଣିଥାଇପାରେ । ସେତ ସବୁବେଳେ ଘରେ ରହୁଥିଲା ।

ବିକାଶ କିଛି ମନେଅଛି ତୋର ଆମ ଗାଁ ଜମିବାଡ଼ି । ଜେଜେ ଜେଜେମା' କିମ୍ବା ଦାଦା, ଖୁଡ଼ି ଆଦିଙ୍କୁ ନେଇ ବାପା ମାଆଙ୍କ ଭିତରେ କଳିକଜିଆ ହେବାର ।

ପ୍ରଣତି (ମନେ ପକାଇ) ହଁ ହଁ ମନେ ପଡ଼ିଲା । ଥରେ ଜେଜେ ଆଉ ଜେଜେମା' ଏଠିକି ଆସିଥିଲେ । ଏ ଘରକୁ ନୁହଁ ମ, ସରକାରୀ କ୍ୱାଟର୍ସକୁ । ଦିନେ ସଂଜରେ ଜେଜେ ବାପାଙ୍କୁ ଟଙ୍କା ମାଗିଲେ କହିଲେ ତୁ ପଇସା ଦେଲେ ଗାଁରେ ଦୁଇ ବଖରା ପକ୍କା ଘର କରିବି ।

ବିକାଶ ହଁ କଥା ଯାଇ ତା'ହେଲେ ଏଇଠି...ତା'ପରେ ତା'ପରେ ବାପା କ'ଣ କହିଲେ ?

ପ୍ରଣତି ବାପା ଆଉ କ'ଣ କହିବେ ? ବାପା କହିବା ଆଗରୁ ପରା ମାଆ କହିବା ଆରମ୍ଭ କରିଦେଲା ।

ପ୍ରକାଶ ମାଆ କହିଲା ? କ'ଣ କହିଲା ?

ପ୍ରଣତି କହିଲା, ଆମେ ସରକାରୀ ଘରେ ରହୁଛୁ ଯେ ନିଜେ ଖଣ୍ଡେ ଘର କରିପାରୁନୁ ।

ବିକାଶ ତା'ପରେ ଜେଜେ କ'ଣ କହିଲେ ?

ପ୍ରଣତି ସେ କହିଲେ! ତୁମେ ଘର କରୁନ ତୁମକୁ କ'ଣ କିଏ ମନା କରୁଛି । ମାଆ କହିଲା...ଆମର ପଇସା କାହିଁ ? ଯାଙ୍କର ଦରମାତ ଯାହା, ତିନି ତିନିଟା ପିଲାଙ୍କୁ ପାଠ ପଢ଼େଇବା ପାଇଁ ଲୋନ୍ ପରେ ଲୋନ୍ କରି ଚାଲିଛନ୍ତି । ଖାଇ ପିଇ ବଞ୍ଚିବା କଷ୍ଟ ହେଉଛି । ଆମେ ଘର କଲେ ଆମକୁ କ'ଣ କିଏ ପଇସା ଦେଇ ପକେଇବ । ତା'ଛଡ଼ା ଗାଁରେ ପକ୍କା ଘର କରିବା କ'ଣ ଦରକାର ?

ପ୍ରକାଶ ମାଆ ଏମିତି କହିଲା ? ସେଇଠୁ... ?

ପ୍ରଣତି ଜେଜେ କହିଲେ, ଗାଁରେ ଫିବର୍ଷ ବନ୍ୟାରେ ଧୋଇ ହୋଇ ଯାଉଛି । ମାଟି ଘର କେବେ ଭାଙ୍ଗି ପଡ଼ିବ । ଗାଁରେ ସମସ୍ତେ ପକ୍କା ଘର କରୁଛନ୍ତି । ଇଚ୍ଛା ହେଉଛି ମରିବା ଆଗରୁ ପୁଅ ନାତି ପାଇଁ ଦି' ବଖରା ପକ୍କା ଘର କରିଦେଇ ଯାଆନ୍ତି ।

ବିକାଶ ତା' ପରେ ମାଆ କ'ଣ କହିଲା ?

ପ୍ରଣତି କ'ଣ ଆଉ କହିଥିବ ବୋଲି ଭାବୁଛୁ ? ରୋକ୍‌ଠୋକ୍ ଶୁଣେଇ ଦେଲା । ଆମେ ଦେଇ ପାରିବୁ ନାହିଁ । ଗାଁରେ ଜମି ବିକି ଘର ତିଆରି କର । ଜେଜେ କହିଲେ ଜମି ବିକି ଘର ତିଆରି କରିବି ପୁଅ ନାତି ଖାଇବେ କ'ଣ ?

ପ୍ରକାଶ ଠିକ୍ କଥା କହିଛନ୍ତି । ତା'ପରେ...

ପ୍ରଣତି ମାଆ କହିଲା, ଏ ପୁଅ କି ନାତି ନାତୁଣୀଙ୍କ କଥା ତୁମର ଚିନ୍ତା କରିବା ଦରକାର ନାହିଁ । ଆମେ ସେଠିକି ରହିବାକୁ ଯିବୁନି କି ଟଙ୍କା ଦେଇପାରିବୁନି ।

ବିକାଶ ମାଆର କଥା ଶୁଣି ଜେଜେ ତ ଖପ୍ପା ହୋଇଯାଇଥିବେ ।

ପ୍ରଣତି ନା, ଜେଜେ ଚୁପ୍ ରହିଲେ ।

ପ୍ରକାଶ ଆଉ ବାପା ।

ପ୍ରଣତି ଇନ୍‌ଫାକ୍ଟ, ମାଆଙ୍କ ପଛରେ ଥାଇ ବାପା ଜେଜେଙ୍କୁ ଚୁପ୍ ରହିବାକୁ ଇସାରା ଦେଲେ । ତା'ପରଦିନ ଜେଜେ ଆଉ ଜେଜେମା' ଗାଁକୁ ଚାଲିଗଲେ। ତା'ପରେ ସେମାନେ ଆଉ ଏଠିକି କେବେ ଆସିନଥିଲେ । ଅନ୍ତତଃ ମୋ' ବାହାଘର ପର୍ଯ୍ୟନ୍ତ ।

ବିକାଶ ହେଲେ ଗାଁରେ ତ ଚାରି ବଖରା ପକ୍କାଘର ତିଆରି ହୋଇଛି । ଘର ପ୍ରତିଷ୍ଠାକୁ ପରା ଆମେ ଯାଇଥିଲେ ।

ପ୍ରଣତି କେଜାଣି ଜେଜେ ଯଦି ଜମି ବିକି କରିଥିବେ । ମୁଁ ଜାଣିନି ।

ପ୍ରକାଶ ସାନବାପା ଆଉ ବାପାଙ୍କ ଭିତରେ ଜମିବାଡ଼ି କିମ୍ବା ଘରଦ୍ୱାରକୁ ନେଇ କେବେ କିଛି ଝଗଡ଼ା ହେବା କଥା ଜାଣିଛୁ ?

ପ୍ରଣତି ସେଇ ଘଟଣା ପରେ ସେମାନେ ବି କେବେ ଏଠିକି ଆସିନଥିଲେ । ପ୍ରଥମେ ଆସିଥିଲେ ମୋ' ବାହାଘରକୁ ସେ ପୁଣି ଦି' ଦିନ ପାଇଁ ।

ପ୍ରକାଶ ସେତେବେଳକୁ ଜେଜେ ବାପା ଜେଜେମା' ମରିସାରିଥିଲେ ।

ବିକାଶ ଆମ ବାହାଘରକୁ ସାନବାପାଙ୍କ ଘରର ସମସ୍ତେ ଆସିଥିଲେ ସତ ହେଲେ ସେମାନଙ୍କର ଆମ ପ୍ରତି ଏତେ ଆନ୍ତରିକତା ଥିବାର କାହିଁ ଜଣାପଡୁନଥିଲା ।

ପ୍ରକାଶ ସ୍ୱାଭାବିକ କଥା - ମୋ' ମତରେ ମାଆର ଏମିତି ରିଆକ୍ଟ କରିବାଟା ଆଦୌ ଉଚିତ୍ ନଥିଲା ।

ବିକାଶ ବାପ ପୁଅଙ୍କ କଥା, ସେମାନେ ବୁଝାବୁଝି ହୋଇ ଥାନ୍ତେ ।

ପ୍ରକାଶ ତା'ଛଡ଼ା ଜେଜେ ବୟସରେ ତା' ଠାରୁ କେତେ ବଡ଼ । ଜେଜେଙ୍କୁ ବହୁ ବାଧି ଥିବ ତ ?

ବିକାଶ ମାଆର ଏମିତି ମୁହେଁ ମୁହେଁ କହିବା ଅଭ୍ୟାସଟା ଆଦୌ ଭଲ ନୁହେଁ ।

ପ୍ରକାଶ ମୋ' ମତରେ ବାପାଙ୍କର ସେଠି ଚୁପ୍ ରହିବା ଆଦୌ ଉଚିତ୍ ନଥିଲା ।

ପ୍ରଣତି ବାପା ଯଦି ସେତେବେଳେ ମାଆଙ୍କୁ କିଛି କହିଥାନ୍ତେ ତା'ହେଲେ ଯେ ଦିନ ଘରେ ମହାଭାରତ ଲାଗିଥାନ୍ତା । ତା' କଥା ତୁମେ ଜାଣିଛ ଭାଇ । ସେ ଭାଙ୍ଗିଯିବ ପଛେ ନଇଁବ ନାହିଁ । ସେ କଥା ମୁଁ ଅଙ୍ଗେ ନିଭାଇଛି ପରା ।

ବିକାଶ କାହିଁକି ? ସିଏ ତୋତେ କ'ଣ କହିଲା କି ?

ପ୍ରଣତି ମୋତେ କହିଥିଲେ ତ ଚିନ୍ତା ନଥିଲା । ମୁଁ ତା' ଝିଅ ମୋତେ ନ ହେଲେ ଦି'ପଦ ଶୁଣେଇଲା ।

ପ୍ରକାଶ ତୋ' ଘରର ଆଉ କାହାକୁ କ'ଣ କହିଲା ନା କ'ଣ ?

ପ୍ରଣତି କ'ଣ ତୋତେ ଆଉ କହିବି, ସେକଥା ନ କହିଲେ ଭଲ ।

ବିକାଶ କହୁନୁ କହ । ଶୁଣିବା ।

ପ୍ରଣତି ୪/ ୫ ବର୍ଷ ତଳେ ଆମ ଘରକୁ ଯାଇଥିଲା ସାନ ଝିଅର ଅନ୍ନପ୍ରାସନ୍ନକୁ ସେଠି ଯାହା କଲା ଓଃ ମୋ' ମୁଣ୍ଡ ତଳକୁ ହୋଇଗଲା ପରା ।

ପ୍ରକାଶ କ'ଣ ଏମିତି କଲା କି ତୋତେ ସେଠି ଗାଳି ଗୁଲଜ କଲା ନା କ'ଣ ?

ବିକାଶ ଅଜିତ୍ ବାବୁଙ୍କୁ କିଛି କହିଦେଇଥିବ । ତା' ମୁହଁରେ କ'ଣ ବାଡ଼ବତା ରହେ କି ?

ପ୍ରଣତି ତାଙ୍କୁ ତ ଯାହା କହିଲା ସେ କଥା ଛାଡ଼ ମୁଁ ଯାଙ୍କୁ ବୁଝେଇ ଶୁଝେଇ ଶାନ୍ତ କରିଦେଲି । ହେଲେ ମୋ' ଶାଶୁ ଶଶୁରଙ୍କୁ ଯେମିତି ସିଏ କହିଲାନା...।

ବିକାଶ କ'ଣ କହିଲା ?

ପ୍ରଣତି ନା ବାବା ଥାଉ ! ତା' କାନରେ ଯଦି ଏଇନେ ପଡ଼ିଯିବନା ତା'ହେଲେ ମୋ' ଅବସ୍ଥା ସାରିବ ।

ବିକାଶ ରହ ମୁଁ ଦେଖି ଆସେ (ଅନେଇ) ରୋଷେଇ ଘରେ କ'ଣ ସବୁ କରୁଛି । କହୁନୁ କ'ଣ କହିଲା ?

ପ୍ରଣତି ଆଗେ ମୋତେ କହିଲା ସବୁ ପଇସା କାହିଁକି ଘରକୁ ଦେଇ ଦେଉଛୁ ? ଦି'ଟା ଝିଅ ଜନମ କରିଛୁ ତାଙ୍କ ନାଁରେ ବ୍ୟାଙ୍କରେ ପଇସା ରଖୁନୁ ।

ପ୍ରକାଶ ଝିଅ ମାନଙ୍କ ନାଁରେ ତୁମେ କ'ଣ କିଛି କିଛି ସେଭିଙ୍ଗ୍ କରୁନ...?

ପ୍ରଣତି କ'ଣ ଯେ କହୁଛୁ ଭାଇ - ଆରେ ନ ରଖିବି କେମିତି ? ତା' କହିବା କଥା ମୁଁ ମୋ' ପୁରା ଦରମାଟା ରଖି ଦିଅନ୍ତି । ଘରକୁ ଦିଅନ୍ତି ନାହିଁ ।

ବିକାଶ ସେଇଟା କେମିତି କଥା ମ ? ଘରେ ଶାଶୁ ଶଶୁରଙ୍କ ପାଖରେ ରହୁଛୁ ଯେତେବେଳେ, ତୋ' କର୍ତ୍ତବ୍ୟ ତ ପୁଣି ଅଛି ନା ।

ପ୍ରକାଶ ତୋ' ଶାଶୁ ଶଶୁର କ'ଣ ପଇସା ମାଗନ୍ତି ?

ପ୍ରଣତି ସେମାନେ କାହିଁକି ମାଗିବେ । ଇନ୍‌ଫ୍ୟାକ୍ଟ ସେମାନେ ପେନ୍‌ସନ୍ ପାଉଛନ୍ତି । ଝିଅ ଦି'ଟାଙ୍କ ନାଁରେ ସେମାନେ ବି କିଛି କିଛି ଫିକ୍ସ ଡିପୋଜିଟ୍ କରିଛନ୍ତି । ସେ କଥା ମୁଁ ମାଆଙ୍କୁ ଅବଶ୍ୟ କହିନି । ସେଇଟା ମୋର ଭୁଲ୍ । ତା'ପରେ ସେ ଯାଙ୍କୁ କହିଲା, ସିଏ ତ ରାଗି ଖପ୍ପା । ତା'ପରେ ଦିନେ କଥାରେ କଥାରେ ଶାଶୁ ଶଶୁରଙ୍କୁ ଦେଖେଇ ଶୁଣେଇ କହିଲା ପୁଅବୋହୂ ପଇସାରେ ଚଳିଲେ କ'ଣ ସୁଖ ଲାଗିବ । ସେଇଥିପାଇଁ ଆମେ ପୁଅବୋହୂଙ୍କୁ ପଇସା ମାଗୁନୁ କି ତାଙ୍କ ପଇସାରେ ଚଳୁନୁ । ଆମ ଘରେ ଏ ସଂସ୍କାର ନାହିଁ ।

ବିକାଶ ଛି ଛି ଏମିତି କହିଲା !

ପ୍ରଣତି ମୁଁ କ'ଣ ମିଛ କହୁଛି ?

ପ୍ରକାଶ ତୋ' ଶାଶୁ ଶଶୁର ତ ରାଗି ପାଚି ଫାୟାର ହୋଇଯାଇଥିବେ ?

ପ୍ରଣତି ସେ କଥା ଆଉ କହନା, ଓହୋ କି କଷ୍ଟରେ ସେ ସେଇ କେତେଟା ଦିନ ମୁଁ କଟେଇଛି । ଶେଷରେ ବାପାଙ୍କୁ ଫୋନ୍ କଲି ସେ ଯାଇ ମାଆଙ୍କୁ ନେଇ ଆସିଲେ । ଶାଶୁ ଶଶୁରଙ୍କୁ ବୁଝେଇ ଶୁଝେଇ ମାଆର ଅଜାଣତରେ ବାପା ଭୁଲ୍ ମାଗି ଆସିଲେ । ସେଇ ଦିନରୁ ସେମାନେ କ'ଣ ଏଠିକି ଆସୁଛନ୍ତି-ନା ଏମାନେ ସେଠିକି ଯାଉଛନ୍ତି । ଦୁଇ ବନ୍ଧୁଙ୍କ ଭିତରେ ମୁଁ ହିଁ ଯାହା ଯୋଗସୂତ୍ର ହୋଇଛି ।

ପ୍ରକାଶ ଠିକ୍ କଥା । ତୁମେ ତାଙ୍କ ଘର କଥାରେ ଅଯଥାରେ ମୁଣ୍ଡ ପୁରେଇବ କାହିଁକି ନା...

ବିକାଶ ସେମାନେ ତୋତେ ଏଠିକି ଆସିବାକୁ ମନା କରନ୍ତିନି । (ଏତିକିବେଳେ ଦିନେଶ ର ଫୋନ୍ ବାଜିଲା ।)

ପ୍ରଣତି ବାପା ତୁମ ଫୋନ୍ ବାଜୁଛି...(ଦେଖିଲା...) ଆରେ ପ୍ରଦୋଷ ଭାଇ ଫୋନ୍ କରିଛନ୍ତି (ଉଠେଇଲା) ହ୍ୟାଲୋ...କିଏ ପ୍ରଦୋଷ ଭାଇ ମୁଁ ପ୍ରଣତି କହୁଛି - (ଧାଇଁ ଆସି ଦିନେଶ ଫୋନ୍ ଛଡ଼େଇ ନେଇ କଥା ହେଲେ)

ଦିନେଶ — ହଁ କୁହ...ଆଚ୍ଛା ଶୁଣ ପିଲାମାନେ ଆସିଛନ୍ତି । ମୁଁ ଟିକିଏ ବ୍ୟସ୍ତ ଅଛି, ପରେ ଫୋନ୍ କରିବି...ହେଲା...(ଫୋନ୍ କାଟିଦେବେ ଏବଂ ମିଛରେ ଫୋନରେ କଥା ହେବେ) ହଁ ହଁ...ପ୍ରକାଶ, ବିକାଶ, ପ୍ରଣତି ସମସ୍ତେ ଆସିଛନ୍ତି - କଥା ହେବ ଦେବି... କ'ଣ କହିଲ ବ୍ୟସ୍ତ ଅଛ...ପରେ ଫୋନ୍ କରିବି...ଆଚ୍ଛା... । (ପୁଣି ଫୋନ୍ କାଟିବାର ଅଭିନୟ କଲେ) ପ୍ରଦୋଷ ଫୋନ୍ କରିଥିଲା ତା' ବାପା ଆଉ ଦିଲ୍ଲୀରେ ରହିବାକୁ ଚାହୁଁନି, ଏଇ ଭୁବନେଶ୍ୱରରେ ଘର କିଣିବାକୁ ଇଚ୍ଛା । ସେଇଥିପାଇଁ ସେ ମଝିରେ ମଝିରେ ଫୋନ୍ କରେ...ଟା'ଟା ହୋଇଗଲାଣି ନେଇ ଆସୁଛି । (ପ୍ରସ୍ଥାନ)

(ସମସ୍ତେ ସମସ୍ତଙ୍କୁ ଅନେଇଲେ)

ପ୍ରଣତି — କିଛି ମାର୍କ କରୁଛୁ ଭାଇ... ?

ପ୍ରକାଶ — କେଉଁ କଥା... ?

ପ୍ରଣତି — ବାପା କେମିତି ଡିଫେରେଣ୍ଟ ହୋଇଯାଇଛନ୍ତି...

ବିକାଶ — ଛାଡ଼ ସେକଥା...। ତୁ କହିଲୁନି ତ ତୋ' ଶାଶୁ ଶଶୁର ତୋତେ ଏଠିକି ଆସିବାକୁ ମନା କରନ୍ତି ନାହିଁ...

ପ୍ରଣତି — ଏ ପର୍ଯ୍ୟନ୍ତ ତ ମନା କରି ନାହାଁନ୍ତି ।

ବିକାଶ — ଆମ ଘରେ ମାଆ ଦି'ମାସ ରହିବ ବୋଲି କହି ଯାଇଥିଲା । ହେଲେ ମାସ ଗୋଟିଏ ବି ରହିପାରିଲା ନାହିଁ । କେବେ ମୋତେ ପାଟିକଲାଣି ତ କେବେ ଲିସାକୁ ଗାଳି କଲାଣି । ଆରେ ଆମ ଚାକିରି ତ ସେଇଆ, ଆମେ କ'ଣ ଛୁଟି ନେଇ ତୋ' ପାଖରେ ବସି ରହିପାରିବୁ । ଯେତେ ବୁଝେଇଲେ ବୁଝିଲା ନାହିଁ । ମୋତେ ନେଇ ଘରେ ଛାଡ଼ି ଦେଇ ଆସ । ମୋତେ ଏଠି ଜେଲ୍‌ରେ ରହିବା ଭଳିଆ ଲାଗୁଛି । ଓହୋ ସେଇ କେତେ ଦିନ ତା' ପାଇଁ ମୁଁ ଅସ୍ଥିର ହୋଇଗଲି ।

ପ୍ରକାଶ — କହନା ସେ କଥା । ମୋ' ପାଖକୁ ଯାଇଥିଲା ଯେ ଯାଉ ଯାଉ ଆଗ ଚାକରାଣୀକୁ ରୋଷେଇ କରିବାକୁ ମନା କରିଦେଲା । ତା'ପରେ କହିଲା ମୁଁ ଥିବା ଯାଏ ସେ ଏ ଘରକୁ ଆସିବ ନାହିଁ । ମୁଁ ଏଠି ବସିବସି କ'ଣ କରିବି କି ? ତା'ପରେ ତ ଖାଲି ଏଟା ହେଲାନି, ସେଟା କାହିଁକି କଲନି । ବାହାରୁ ଖାଇବା ମଗେଇଲେ ଖାଇବ ନାହିଁ । ନିଜେ ସବୁ କାମ କରିବାକୁ ଆଗଭର ହେବ, ଆଉ କରିସାରି ଗରଗର ହେବ । ମୁଁ ତ ଭାବିଲି କାହାକୁ ସମ୍ଭାଳିବି କେମିତି ସମ୍ଭାଳିବି । ସାମ୍ନାରେ ବୋଉ ଗରଗର ତ ଭିତରେ ତୋ' ଭାଉଜ ଫଁ ଫଁ । ଓହୋ କେତେବେଳେ ଯେ ଷଣ୍ଢ ଲଢ଼େଇ ଲାଗିଯିବ ସେଇ ଭାବନାରେ ମୋ ନିଶ୍ୱାସ ବନ୍ଦ ହୋଇଗଲା । (ସମସ୍ତେ ହସିଲେ)

ପ୍ରଣତି — ତଥାପି ତୁମେମାନେ ସେମାନଙ୍କୁ ନେଇ କିଛି ଦିନ ପାଖରେ ରଖ । ତାଙ୍କ ମନ ଭଲ ରହିବ । ତୁମକୁ ବି ହୁଏତ ଟିକିଏ ଅସୁବିଧା ହୋଇପାରେ କିନ୍ତୁ ଆଡ଼ଜଷ୍ଟ କରିବାକୁ ପଡ଼ିବ ।

ବିକାଶ — ମୋର ଆପତ୍ତି ନାହିଁ ତେବେ ଭାଇ ଆଗ ନେଇ ରଖୁ ।

ପ୍ରକାଶ — ଆଚ୍ଛା ଏତେବେଳକୁ ଭାଗ ପକାଉଛୁ ନୁହେଁ ତୁ ଭାରି ସ୍ୱାର୍ଥପର...

ବିକାଶ — ତୁ ଯଦି ଏତେ ସ୍ୱାର୍ଥ ତ୍ୟାଗୀ ମଣିଷ...ବାପା ମାଆଙ୍କୁ ନେଇ ପାଖରେ ରଖୁନୁ...ନିଜର ତ କରାମତି ନାହିଁ ମୋତେ ଆଙ୍ଗୁଳି ଦେଖାଉଛି...

ପ୍ରଣତି — ଆସ୍ତେ ଆସ୍ତେ। ଆରେ ଆରେ ତୁମେ ବି' ଜଣ ପାଟି କରୁଛ କାହିଁକି ? ବାପା ମାଆ ଶୁଣିଲେ କ'ଣ ଭାବିବେ କହିଲୁ... ?

ପ୍ରକାଶ — ଆଚ୍ଛା ଗୋଟିଏ କାମ କରାଯାଉ ମୁଁ ବାପାଙ୍କୁ ନେଇ ରଖୁଛି ତୁ ମାଆଙ୍କୁ ନେଇ ରଖ...

ବିକାଶ — ବାଃ...ରେ ଭାଇ ବାଃ...ତୋର ଚାକିରି ନକରି ପଲିଟିକ୍ସ କରିବା ଉଚିତ୍ ଥିଲା । ସବୁଠି ନିଜ ଫାଇଦା ଦେଖୁଛୁ ନୁହେଁ... ଶାନ୍ତ ଶିଷ୍ଟ ମଣିଷଙ୍କୁ ତୁ ସମ୍ଭାଳିବୁ ଆଉ ଦୁର୍ଗାମାତାଙ୍କୁ ମୋ ଭାଗକୁ ଠେଲି ଦେବୁ। ନୁହେଁ?

ପ୍ରକାଶ — ନହେଲେ ଛଅ ଛଅ ମାସ କରି ଓଲଟ ପାଲଟ କରି ରଖିବା...ଏଥିରେ ତୁ ରାଗୁଛୁ କାହିଁକି ?

ପ୍ରଣତି — ମୋ କଥା ମାନ, ଏ ଫର୍ମୁଲା ଚଳିବ ନାହିଁ। ଯିଏ ରଖିବ ଏକସାଙ୍ଗରେ ରଖିବ ନ ହେଲେ ଏକା ଏକା ସେମାନେ କେବେ ବି ରହିବାକୁ ରାଜି ହେବେନି। ସେମାନେ ଟୁକୁର ଟାକୁର କଳିଝଗଡ଼ା ହେବେ। କିନ୍ତୁ କାହାରିକୁ ଛାଡ଼ି କିଏ ମାସେ ତ ଦୂରର କଥା, ସପ୍ତାହେ ବି ରହିପାରିବେ ନାହିଁ। ବାଗବାନ ସିନେମା ଦେଖିନୁ କି ?

ବିକାଶ — ସେ କଥା ନୁହେଁ ଯେ, ଆଚ୍ଛା କହିଲୁ! ଏଠି ତ ପୁଣି ମାଆ ରାନ୍ଧି ବାଢ଼ି ସମସ୍ତଙ୍କୁ ଖାଇବା ପିଇବାକୁ ଦେଉଛି। ସମସ୍ତଙ୍କ କଥା ବୁଝୁଛି। ସେଠିକି ଗଲେ ତା'ର କ'ଣ ହୁଏ କେଜାଣି ? ବିଲକୁଲ ଆଡଜଷ୍ଟ କରିବାକୁ ନାରାଜ...

ପ୍ରଣତି — ବୋଧହୁଏ ସେଠି ସିଏ ଶାଶୁ ପାଲଟିଯାଏ।

ପ୍ରକାଶ — ଖାଲି ଶାଶୁ ନୁହେଁ। ଭୟଙ୍କର ଶାଶୁ। ସତ କହିବାକୁ ଗଲେ ମନେ ମନେ ମୁଁ ଭୟ କରିଥାଏ। ଠାକୁରଙ୍କୁ ଡାକେ ଆଜି ଦିନଟା କେମିତି ଶାନ୍ତିରେ କଟୁ। ସେତେବେଳେ ମୋର ମାନସିକ ଅବସ୍ଥା ଯାହା ହୁଏ ନ କହିଲେ ଭଲ।

ବିକାଶ — ଏକା କ'ଣ ତୋର ? ସଂସାରର ସବୁ ସ୍ୱାମୀମାନଙ୍କର ଅବସ୍ଥା ବୋଧହୁଏ ସେଇ ଏକା ଭଳି।

ପ୍ରକାଶ — ଗାଁରେ ତିଆରି ହେଉଥିବା ସେଇ ପୋଡ଼ପିଠା ଭଳି ଅବସ୍ଥା।

ବିକାଶ — "ଉପରେ ନିଆଁ, ତଳେ ନିଆଁ, ମଝିରେ ବସିଛି ବୁଢ଼ାମିଆଁ।"

(ସମସ୍ତେ ହସିଲେ)

ପ୍ରଣତି — ଯାହା କୁହ ଭାଇ, ମାଆ ରାଗିଗଲା ବେଳେ ତା' କଥାବାର୍ତ୍ତାରେ ସିନା କିଛି ବାଡ଼ ବତା ରହେନି କି ସେ ସ୍ଥାନ, କାଳ, ପାତ୍ର ବୁଝେନି ହେଲେ ତା' ମନରେ ଗଣ୍ଠି ନ ଥାଏ କି କୂଟ କପଟ ନ ଥାଏ।

ପ୍ରକାଶ — ସେ କଥା ସିନା ତୁ ବୁଝୁଚୁ କି ମୁଁ ବୁଝୁଛି, ହେଲେ ବନ୍ଧୁବାନ୍ଧବ, ଜ୍ଞାତିକୁଟୁମ୍ବ କି ସାହି ପଡ଼ିଶା ବୁଝିବେ କାହିଁକି କହିଲୁ ?

ବିକାଶ — କହିଲା ଭଳିଆ "ପାଦ ହୁଡ଼ିଲେ ନିଜେ ଛୋଟା ସିନା ତୁଣ୍ଡ ହୁଡ଼ିରେ ପରା ବଂଶ ଛୋଟା।"

ଦିନେଶ — (ପ୍ରବେଶୀ) ଭାଇଭଉଣୀ କ'ଣ ସବୁ ଗପ ଚାଲିଛି....

ଭାଇ ଭଉଣୀ କହ କାହାଣୀ    ଭାରତବାସୀ ଭାରି ସାହସୀ

ଗପ ସେତିକିରେ ଥାଉ ନିଅ ଚା' ନିଅ।

ପ୍ରଣତି — ମୁଁ ତା ଭାବିଲି ମାଆଙ୍କର ରାଗ ଶାନ୍ତ କରୁ କରୁ ତୁମେ ଆମ ଚା' କଥା ପୁରା ଭୁଲିଗଲ କି ଆଉ ?

ଦିନେଶ — ରାଜା ହୁଅ ବା ମନ୍ତ୍ରୀ ହୁଅ, ଦେବତା ହୁଅ ବା ମଣିଷ ହୁଅ, ସବୁ ଶକ୍ତିଶାଳୀ ପୁରୁଷ ବୋଧହୁଏ ଘରର ଚାରିକାନ୍ଥ ଭିତରେ କେଉଁଠି ନା କେଉଁଠି ଜଣେ ଜଣେ ଖୁବ୍ ଦୁର୍ବଳ ମଣିଷ। ନା' କ'ଣ ପ୍ରକାଶ ?

ପ୍ରକାଶ — ସେ କଥା ସତ ଯେ, ଛାଡ଼ନ୍ତୁ ସେ କଥା। ହେଲେ ଏବେ ପ୍ରଶ୍ନ ହେଲା...

ଦିନେଶ — ସେଇ ମୂଳପ୍ରଶ୍ନ, ମୁଁ ତୁମକୁ ଡକେଇଛି କାହିଁକି ? (ସମସ୍ତେ ହସିଲେ)

ପ୍ରଣତି — ବାପା ଚା'ଟା ଖୁବ୍ ଟେଷ୍ଟି ହୋଇଛି। କ'ଣ ସବୁ ଏଥିରେ ପକାଇଛ କହିଲ ? ମୁଁ ବି ପକେଇବି।

ଦିନେଶ — ମୁଁ କିଛି ପକାଇନି। ସେଥିରେ ସବୁ ମିଶାମିଶି ହୋଇ ଯାହା ଅଛି ନା, ଇନଫ୍ୟାକ୍ଟ ଏଇଟା ହର୍ବାଲ ଟି...ଦେହ ପାଇଁ ଖୁବ୍ ଭଲ। କାରଣ ଏଥିରେ ସାଧାରଣ ଚା'ରେ ଥିବା ତତ୍ତ୍ୱମାନ ସଠିକ୍ ମାତ୍ରାରେ ଅଛି ଯଥା ଇଟୋମିନ ଆଦି ଅଛି, କିନ୍ତୁ ନିକୋଟିନ ନାହିଁ।

ବିକାଶ — ଆଚ୍ଛା, ବାପା ବୋଉର ଖବର ଏବେ କ'ଣ ? ବର୍ଷା ହେଲାଣି ନା ସେମିତି ବିଜୁଳି ମାରୁଛି ?

ଦିନେଶ — ଟପ୍ ଟପ୍ ହୋଇ ବର୍ଷା ଝରୁଛି। ଆକାଶ ଗୁମ୍ ହୋଇ ରହିଛି। କେତେବେଳେ ବି ବିସ୍ଫୋରଣ ହୋଇପାରେ।

ପ୍ରକାଶ — ହୁଏତ ଆମେ ସବୁ ଏଠୁ ଚାଲିଯିବା ପରେ।

ବିକାଶ — ଏଥର କିନ୍ତୁ ଖଣ୍ଡ ପ୍ରଳୟ ହୋଇପାରେ।

ଦିନେଶ — ଆରେ ! ସମୁଦ୍ରର ବେଳାଭୂମିରେ ଘର କରି ସମୁଦ୍ରର ଉତ୍ତାଳ ଢେଉକୁ ଦେଖି ଭୟ କଲେ ଚଳିବ ? ବରଂ ତାକୁ ସାବଧାନତା ସହକାରେ ବ୍ୟବହାର କରି ଜୀବନକୁ ଉପଭୋଗ କରିବାକୁ ପଡ଼ିବ। ନହେଲେ ତୁମମାନଙ୍କ ଭଳିଆ ଅଯଥାରେ ଡାଇବେଟିସ୍ ଆଉ ବ୍ଲଡପ୍ରେସର ଭଳି ରୋଗର ଶିକାର ହେବାକୁ ପଡ଼ିବ।

ପ୍ରକାଶ — ମୁଁ ତ ଭାବୁଛି ତୁମର ବହୁଆଗରୁ ଏସବୁ ରୋଗ ଆରମ୍ଭ ହୋଇଯିବା କଥା ଥିଲା।

ଦିନେଶ — ତୁ ଠିକ୍ କହିଛୁ। ନିହାତି ହେବା କଥା। କିନ୍ତୁ ମୁଁ ତାହା କରାଇ ଦେଇନି।

ବିକାଶ — କେବେ ଟେଷ୍ଟ କରିଛ ନା ଏମିତି ମନକୁ ମନ ଭାବି କହି ଦେଉଛ ? ତା'ହେଲେ ଆମକୁ ଟିକିଏ ସେ ମନ୍ତ୍ରଟା କହନ୍ତୁ।

ଦିନେଶ — ଅତି ସହଜ। ଆଉ ଟିକିଏ ଆଗରୁ ଯୋଗ, ବ୍ୟାୟାମ ଆଉ ପ୍ରାଣାୟାମ କଥା ପରା କହୁଥିଲି। ସକାଳୁ ସନ୍ଧ୍ୟା ଅଳ୍ପ ଅଳ୍ପ ପ୍ରାଣାୟାମ କରେ। ସବୁଦିନ ସାଇକେଲରେ ଅଫିସ୍ ଯାଏ। ମାର୍କେଟ ଯାଏ। ତୋ ମାଆ ସାଙ୍ଗରେ ଯିବାକୁ ଥିଲେ ସ୍କୁଟର ବାହାରେ ନ ହେଲେ ନାହିଁ। ଆଉ ସବୁଠୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି, ଯୋଗ ସହିତ ମୁଁ ବିଯୋଗର ଅଭ୍ୟାସ ମଧ୍ୟ ପ୍ରତିଦିନ କରେ। ବିଶେଷ କରି ଦୁଃଖ ଆଉ ଅବସାଦ ଆସିଲା ବେଳେ।

ପ୍ରକାଶ — ବିଯୋଗର ଅଭ୍ୟାସ ? ସେଇଟା ପୁଣି କ'ଣ ?

ବିକାଶ — ଯୋଗ, ପ୍ରାଣାୟମ ତ ଆମେ ଟିଭିରୁ ନିତି ଦେଖୁଛୁ। ହେଲେ ଏଇ ବିଯୋଗର ଅଭ୍ୟାସ ତ କେଉଁଠି ଆମେ ପଢ଼ିନୁ କି ଶୁଣିନୁ। ସେଇଟା କେମିତି, କ'ଣ ?

ପ୍ରଣତି ସେଇଟା ଗଣିତର ସେଇ ଫେଡ଼ାଣ ଭଳି ନୁହେଁ ତ ?

ଦିନେଶ ହଁ, ସେଇ ଫେଡ଼ାଣ ଭଳିଆ କଥା । କିନ୍ତୁ ଏଥିରେ କିଛି କ୍ଷୟ ହୁଏ ନାହିଁ ବରଂ ମନକୁ ଖାଲି କ୍ଷମତା ନୁହେଁ, ଅକ୍ଷୟ କ୍ଷମତା ପ୍ରାପ୍ତ ହୁଏ ।

ପ୍ରଣତି କିନ୍ତୁ ତୁମେ ତ ଯାହା କହୁଛ ଖୁବ୍ କନ୍‌ଫ୍ୟୁଜିଙ୍ଗ୍ କାରଣ ଯୋଗର ଅର୍ଥ ଆମେ ଜାଣୁ ଯୋଡ଼ିବା ଅର୍ଥାତ୍ ଆତ୍ମାକୁ ପରମାତ୍ମାଙ୍କ ସହିତ ଯୋଡ଼ିବା। ପୁଣି ବିଯୋଗର ଅର୍ଥ କ'ଣ ପରମାତ୍ମାଙ୍କଠାରୁ ଆତ୍ମାକୁ ବିଚ୍ଛିନ୍ନ କରିବା କିମ୍ୱା ଦୂରେଇ ନେବା ନୁହେଁ ତ ?

ଦିନେଶ ଆଦୌ ନୁହେଁ । ଏଇ ବିଯୋଗର କଥା ସବୁ ଧର୍ମର ଧର୍ମ ଗୁରୁମାନେ ବ୍ୟାଖ୍ୟା କରିଛନ୍ତି ଅଥଚ ଭିନ୍ନ ରୂପରେ । ମାତ୍ର ମୁଁ ତା'ର ପ୍ରୟୋଗ ହୁଏତ ସେମିତି ନକରି ମୋଭଳି କରୁଛି । ସାଧାରଣତଃ ଆମର କିଛି ପାଇବାକୁ ଇଚ୍ଛା ହେଲେ ଆମେ ଠାକୁରଙ୍କୁ ଡାକୁ ମିଳିଗଲେ ଖୁସି, ନହେଲେ ଦୁଃଖିତ ହୋଇଯାଉ ।

ପ୍ରକାଶ ଖାଲି କ'ଣ ସେତିକି ? ନିଜର ସଫଳତା ପାଇବା ପାଇଁ ଲୋକେ ମନ୍ତ୍ର ତନ୍ତ୍ର କରିବାକୁ ଭଣ୍ଡବାବା ମାନଙ୍କ ଶରଣ ନେଇ ପଶୁପକ୍ଷୀ ବଳୀ ଠାରୁ ଆରମ୍ଭ କରି ଶିଶୁ ବଳୀ ପର୍ଯ୍ୟନ୍ତ ନାରକୀୟ କାଣ୍ଡ କରିବାକୁ ପଛାଇ ଯାଉ ନାହାଁନ୍ତି ।

ପ୍ରଣତି ସେମାନେ ସବୁ ମଣିଷ ନୁହଁନ୍ତି ପାଷାଣ୍ଡ ।

ବିକାଶ ମୋର କହିବାର କଥା ହେଲା, ଦିନ ଆଉ ରାତି ଭଳି, ସୁଖ ଆଉ ଦୁଃଖ, ସଫଳତା ଅବା ବିଫଳତା ଜୀବନର ସ୍ୱାଭାବିକ ପ୍ରକ୍ରିୟା । ସଫଳତାରେ ଅତ୍ୟଧିକ ଉତ୍ସାହିତ ହେବା ଯେମିତି ଉଚିତ ନୁହେଁ ସେମିତି ନିଜର ବିଫଳତାରେ ଅବସାଦ ଗ୍ରସ୍ତ ହେବା ଆଦୌ ଉଚିତ ନୁହେଁ । ତଥାପି ଯଦି କୌଣସି କାରଣରୁ ମନ ଅବସାଦଗ୍ରସ୍ତ ହୁଏ ତା'ହେଲେ ସେଥିରୁ ମୁକ୍ତି ପାଇବା ପାଇଁ ମୁଁ ଏଇ ପଦ୍ଧତି ଅବଲମ୍ବନ କରେ ଆଉ ବିଶାଦ ମୁକ୍ତି ହୁଏ । ତେଣୁ ମୁଁ ତା' ନାମ ଦେଇଛି "ବିଯୋଗ" ।

ପ୍ରକାଶ ତା'ର ଅର୍ଥ କ'ଣ ? ଆଉ ତାତ୍ପର୍ଯ୍ୟ କ'ଣ ?

ବିକାଶ ଏବଂ ତା'ର ପ୍ରୟୋଗର ବିଧି ମଧ କ'ଣ ?

ଦିନେଶ ଭେରୀ ସିମ୍ପୁଲ୍ । ଗୋଟିଏ ମିନିଟ୍ ପାଇଁ ନିରବରେ ମୁଁ ନିଜକୁ କେତୋଟି ପ୍ରଶ୍ନ ପଚାରି ଥାଏ । ଯଥା – ୧. ଜନ୍ମବେଳେ ମୁଁ କ'ଣ ନେଇ ଆସିଥିଲି ଏବଂ ଉକ୍ତ ପଦାର୍ଥର ଅବର୍ତ୍ତମାନରେ ମୁଁ କ'ଣ ହରାଇଲି । ୨. ମୋର କର୍ମ, ଧର୍ମ ଆଉ ପ୍ରତିପତ୍ତି ନେଇ ମୁଁ କ'ଣ କରୁଛି । ମୋ' ଅବର୍ତ୍ତମାନରେ ପୃଥିବୀର କ'ଣ କ୍ଷତି ହେବ । ୩. ମୋର କର୍ମ ଏ ସମାଜ ପାଇଁ କେତେ ଗୁରୁତ୍ୱପୂର୍ଣ୍ଣ ? ୪. ଏ ବିଶାଳ ସୃଷ୍ଟିରେ ମୋର ପରିଚୟ କ'ଣ ? ଏବଂ ମୋର ଆବଶ୍ୟକତା କ'ଣ ? ଇତ୍ୟାଦି ଇତ୍ୟାଦି । ବାସ୍ ତା'ପରେ ମନ ଆପେ ଆପେ ଶାନ୍ତ ହୋଇଯାଏ । ଏହାକୁ ଗୀତାରେ ନିବୃତ୍ତି ବୋଲି କୁହାଯାଇଛି ।

ପ୍ରକାଶ ବାଃ ଇଏତ ବଢ଼ିଆ ଫର୍ମୁଲା ଏହାକୁ ପ୍ରାଟିସ୍ କଲେ ତ ସବୁ ଟେନ୍‌ସନ୍ ଆପେ ଆପେ ଦୂର ହୋଇଯିବ ।

ବିକାଶ ବି.ପି କି ଡାଇଏବିଟିସ୍ ବି ପଳେଇବ । ପରୀକ୍ଷା କରି ଦେଖାଯିବା ଦରକାର ।

ଦିନେଶ ମୁଁ ତ ପରୀକ୍ଷା କରିଦେଖିଛି । ତୁମେ ମଧ ପରୀକ୍ଷା କରିଦେଖିପାର । ମାତ୍ର ଡାକ୍ତରଙ୍କ ପରାମର୍ଶ ବିନା ତୁମେ ଔଷଧ ଖାଇବା ବନ୍ଦ କରିବ ନାହିଁ କିମ୍ୱା ରୋଗର ରେଗୁଲାର ଚେକ୍‌ଅପ୍ କରିବାରେ ହେଳା କରିବ ନାହିଁ ।

ପ୍ରଣତି — ବୁଝିଲ ବାପା । ଏକା ମାଆଙ୍କ ପାଇଁ ତୁମେ ଏତେ ଆବିଷ୍କାର କରିବାକୁ ବାଧ ହେଉଛ । ହେଲେ ମୋ କଥା ଥରେ ଭାବିକ ଦେଖ୍ ଶାଶୁ, ଶଶୁର, ସ୍ୱାମୀ, ପିଲାପିଲି ସମସ୍ତଙ୍କ ମନନେଇ ହସ ଖୁସିରେ ଚଳିବା ଖୁବ୍ କାଠିକର ପାଠ କି ନୁହେଁ ?

ଦିନେଶ — ହଁ ପ୍ରଥମ ପ୍ରଥମ କଷ୍ଟ ଲାଗିବ କିନ୍ତୁ ପରେ ପରେ ସବୁ ଠିକ୍ ଠାକ୍ ହୋଇଯିବ । ବୁଝିଲୁ ଝିଅ ସୁଖଦୁଃଖ ଶାନ୍ତି ଅଶାନ୍ତି ସବୁକିଛି ମୂଳରେ ହେଉଛି ଆମର ମନ ସେଇଥିପାଇଁ କହନ୍ତି "ମନର ମୂଳେ ଏ ଜଗତ" । ମନକୁ ନିଜ ଆୟତ୍ତରେ ରଖିଲେ ସବୁ ନିଜ ଆୟତ୍ତରେ ରହିବ । ଭଗବତ ଗୀତାର ଶ୍ଳୋକ ପଢ଼ିଥିବୁ ।

"ଦୁଃଖେଷ୍ଟୁ ଅନୁଦ୍ୱିଗ୍ନମନା ସୁଖେଷ୍ଟୁ ବୀଗତସ୍ପୃହ
ବୀତ ରାଗ ଭୟ କ୍ରୋଧଃ ସ୍ଥିତଧୀ ର୍ମୁନିରୁଚ୍ୟତେ।"

ହଉ ହଉ ଗଲୁ ଦେଖିଲୁ ତୋ' ମାଆ କ'ଣ କରୁଛି ? ତାକୁ ଟିକିଏ ସାହାଯ୍ୟ କରିବୁ । ଚା' କରୁ କରୁ ମୁଁ ଶାଗ ଆଉ ପରିବା କାଟି ଦେଇଛି । ଶାଗ ବସେଇନଥିଲେ ତୁ ଶାଗ ବସେଇ ଦେଇଆସ । ତାକୁ କିଛି କହିବୁ ନାହିଁ ନହେଲେ ସେ ଯେମିତି ରାଗିଛିନା ଶାଗ ଲୁଣିଆ ତ ପୁଣି ଡାଲମା ଅଲଣା କରି ଥୋଇଦେବ ।

ଅଞ୍ଜଳୀ — (ପ୍ରବେଶୀ) ହଁ ହଁ ମୁଁ ତ ଜୀବନ ସାରା ତୁମକୁ ଲୁଣିଆ ଅଲଣା ଖୁଆଇ ଖୁଆଇ ମାରୁଛି । ମୁଁ ତ ଗୋଟିଏ କଳିହୁଡ଼ା ସ୍ତ୍ରୀଲୋକ, ସମସ୍ତଙ୍କ ସାଙ୍ଗରେ ଖାଲି କଳିକଜିଆ କରୁଛି ।

ପ୍ରଣତି — ଚାଲ ଚାଲ । ତୁ ଭିତରକୁ ଚାଲିଲୁ । ମୁଁ ତୋତେ ସାହାଯ୍ୟ କରିବି ।

ଅଞ୍ଜଳୀ — ଏତେ ଆଉ ସୁଆଗ ଦେଖାନା ବୁଝିଲୁ । ତୁ ସାହାଯ୍ୟ କରିବୁ । କାହିଁକି ? ମୁଁ ଏକା କ'ଣ ପାରିବି ନାହିଁ ନା ତୁ ସବୁ ଦିନ ରହି ମୋତେ ସାହାଯ୍ୟ କରୁଥିଲୁ । ତୁ ଝିଅଟା ଡାକରା ହୋଇ ଦି'ଦିନ ଆସିଛୁ ବୁଲାବୁଲି କରିଯିବୁ । ମୁଁ ତ ସବୁଦିନ ଏ ଘରେ ରୋଷେଇ କରୁଛି ନା ଗାଁ ଲୋକ କିଏ ଆସି ମୋ କାମ କରିଦେଉଛନ୍ତି । ମୋତେ ତ ରନ୍ଧାବଢ଼ା ଆସେନି ନା ଖାଲି ଲୁଣିଆ ଅଲଣା ରାନ୍ଧୁଛି ।

ପ୍ରକାଶ — ଆରେ ବାପା ମଜାରେ ସେମିତି କହୁଥିଲେ ନା ।

ବିକାଶ — ତୁ ଏମିତି ରାଗୁଛୁ କାହିଁକି କହିଲୁ । ଆମେ କ'ଣ ତୋତେ ଜାଣିନୁ ଯେ ବାପା ଆମକୁ ତୋ' ବିଷୟରେ ସାର୍ଟିଫିକେଟ୍ ଦେବେ ?

ଅଞ୍ଜଳୀ — ସମସ୍ତେ ବାପାଙ୍କ ସାଙ୍ଗରେ ଯୋଡ଼ି ହୋଇଯାଅ । ମୋର କାହାରି ସାର୍ଟିଫିକେଟ୍ ଦରକାର ନାହିଁ । କେତେ କାଳ ଆଉ ବଞ୍ଚିବି ? ପୁଅ ଝିଅ ତ ଯାଇ ବିଦେଶରେ ରହିବେ । ମଲାବେଳେ ପାଟିରେ ଟିକିଏ ତୁଳସୀ ପାଣି କି ଗଙ୍ଗାପାଣି ଯେ ସେମାନେ ଦେବେ ସେ ଭରସା ତ ନାହିଁ । ଆଉ ପାଖରେ ଯିଏ ରହିବେ ତାଙ୍କ କଥା ଛାଡ଼ । ସବୁ ମୋ ଭାଗ୍ୟ । କାହାକୁ ନିନ୍ଦିବି ? ବାପା ଭାଇଙ୍କୁ, ପୁଅ ଝିଅଙ୍କୁ ନା ମୋ' କର୍ମକୁ ?

ଦିନେଶ — ନାଇଁ ନାଇଁ ଆଉ କାହାକୁ ନିନ୍ଦିବା ଦରକାର ନାହିଁ । ଯେତେ ନିନ୍ଦିବା କଥା ମୋତେ ନିନ୍ଦ । ମୁଁ ତ ତୁମକୁ ସୁଖ ଶାନ୍ତି ଦେଇପାରୁନି । ଏଠି ରହିବାକୁ ଯଦି ଇଚ୍ଛା ହେଉନି ତା'ହେଲେ ପୁଅ ଝିଅଙ୍କ ପାଖକୁ ଯାଇ ରୁହ । ନହେଲେ ବାପ ଘରକୁ ପଳାଅ ।

ଅଞ୍ଜଳୀ ସେମାନଙ୍କ ଘରକୁ କାହିଁକି ଯିବି ? ଝିଅ ଘରକୁ ଯାଇଥିଲି କ'ଣ ଏମିତି ଖରାପ କଥା କହିଦେଲି ଯେ ତୁମେ ପରା ଯାଇ ଭୁଲ୍ ମାଗିଲ । ଘରେ ଦି' ଦି'ଟା ଝିଅ ଜନମ ହୋଇଛି ତାଙ୍କ ପାଇଁ ଟଙ୍କା ସଂଚୟ କରିବାକୁ କହିଲି । ସେଇଟା ମୋର ଭୁଲ୍ ହୋଇଗଲା ? ଘର ଭଙ୍ଗା କଥା ହୋଇଗଲା ? ମୁଁ ଜାଣିଛି ପିଲାଙ୍କୁ ମଣିଷ କରିବାକୁ କେତେ କଷ୍ଟ କରିବାକୁ ପଡ଼େ । ହଉ, ନହେଲା ନାହିଁ । ଖାଲରେ ପଡ଼ିଲେ ବୁଦ୍ଧି ଶିଖିବ ଯେ । ମୁଁ ଆଉ ସେଠିକି ଯିବି ? କ'ଣ ମାଡ଼ ଖାଇବାକୁ ?

ବିକାଶ ହଉ ସେଠିକି ନଯିବୁ ନାହିଁ ତୁ ମୋ' ପାଖକୁ ଚାଲ ।

ଅଞ୍ଜଳୀ ତୋ' ପାଖକୁ ଯିବି । ତୁ କେଉଁ ଭଲ କି ? ସେଠିକି ଯିବି କ'ଣ ଚାକରାଣୀ ହେବାକୁ ?

ପ୍ରକାଶ କ'ଣ ଯେ ତୁ କହୁଛୁ ମାଆ...

ଅଞ୍ଜଳୀ ତୁ ଚୁପ୍ କର । "ଏକା ନାଉର ମଞ୍ଜିଲୋ ସଙ୍ଗାତ କାହାକୁ କରିବି କାଞ୍ଜି ।'' ତମ ଦିହେଁ ତ ସକାଳୁ ପହରୁ ଯୋଡ଼ି ଜାଉଁଳି ହୋଇ ବାହାରି ଯିବ ଯେ ଫେରିବ ରାତି ଅଧକୁ । ବକଟେ ବକଟେ ପିଲା ଦି'ଟା ରାତି ନ ପାହୁଣୁ ସ୍କୁଲ ପଳେଇବେ । ମୁଁ ଘରଟା ଭିତରେ ପାଟିକୁ ସିଲେଇ କରି ବସିଥିବି ଯେ ସେମାନଙ୍କ ଆସିବା ବାଟକୁ ଚାହିଁ । ସେମାନେ ଫେରିଲେ ତାଙ୍କୁ ଖାଇବାକୁ ଦେବି । ଘରର ଯାବତୀୟ କାମ କରିବି । ସେଥିରେ ପୁଣି ଶାନ୍ତି ନାହିଁ ।

ବିକାଶ ତୁ ଘରକାମ କରୁ କାହିଁକି ? ତୋତେ କିଏ କ'ଣ କରିବାକୁ କହେ ?

ଅଞ୍ଜଳୀ ମଲା । ଆଉ କ'ଣ କୁଣିଆ ଭଳିଆ ଗୋଡ଼ ଉପରେ ଗୋଡ଼ ଥୋଇ ବସିଥାନ୍ତି । ମୋତେ ସେ ଖାଇବା ହଜମ ହେବ ନାହିଁ, ବୁଝିଲୁ ।

ପ୍ରକାଶ ଭଲ କଥା – ଏଠି ତ ସବୁକାମ ତୁ ମନକୁ କରୁଛୁ । ସେଠି ବି ତୁ ମନକୁ କରୁଛୁ । ତୋତେ କେହି କାମ କରିବାକୁ ତ କହୁନି ? କରୁଛୁ କାହିଁକି ? ପୁଣି କହୁଛୁ କାହିଁକି ?

ଅଞ୍ଜଳୀ ମୁଁ ନ କଲେ ଆଉ କିଏ କରିବ? ବୋହୂ ? ତାକୁ ସମୟ କାହିଁ ନା ଫୁରସତ୍ କାହିଁ । ଘରେ ରହିଲେ ତ ଘର କାମ କରିବ ?

ପ୍ରକାଶ ଘରର ଚାକରାଣୀକୁ ତୁ ଯାଇ ବନ୍ଦ କରିଦେଲୁ । କହିଲୁ କ'ଣ ନା ମୁଁ ଥିବା ପର୍ଯ୍ୟନ୍ତ ସେ ଆସିବ ନାହିଁ । ତା' ହାତ ରନ୍ଧା ମୁଁ ଖାଇବି ନାହିଁ । ତା'ହେଲେ ଆମେ କ'ଣ କରିଥାନ୍ତୁ, କହ ? ତଥାପି ତ "ମିଲି' ସକାଳୁ ଉଠି ଜଳଖିଆ ପତ୍ର ତିଆରି କରିଯାଉଛି ।

ଅଞ୍ଜଳୀ କିଏ କହୁଛି କରିବାକୁ ? ତୁମେ କରୁଛ ତୁମ ପାଇଁ । ମୋ' ପାଇଁ ମୁଁ କେବେ କରିବାକୁ କହିଛି ? ନାଇଁ ନାଇଁ ମୁଁ କାହା ପାଖକୁ ଯିବି ନାହିଁ । ଯାହାର ଇଚ୍ଛା ହେଲେ ମୋ' ପାଖକୁ ଆସିବ, ନହେଲେ ନାହିଁ । ଆରେ ତୁମକୁ ଖୁଆଇ ପିଆଇ ପାଠ ଶାଠ ପଢ଼େଇ ମଣିଷ କରିଦେଲୁ। ଏଣିକି ତୁମ ଇଚ୍ଛା, ଆସିଲେ ଆସ ନଆସିଲେ ନାହିଁ । ମୁଁ ଏଇଠି ପଡ଼ି ପଡ଼ି ମରିବି ପଛେ କୁଆଡ଼େ ଯିବିନି ।

ବିକାଶ କ'ଣ ଯେ ତୁ କହୁଛୁ ? ବୁଝିପାରୁଛ ତ ?

ଅଞ୍ଜଳୀ କହିବି ନାହିଁ । ଭଲା ଚାକିରି କଲ ଯେ ଆଗରୁ ବର୍ଷରେ ଥରେ ଦି'ଥର ଆସୁଥିଲ । ବାହାଘର ପରଠାରୁ ଦି' ବର୍ଷରେ ବି ଥରେ ଆସିବାକୁ ସମୟ ମିଳୁନି । ସମୟ ମିଳୁନି ନା ଇଚ୍ଛା ହେଉନି ? ସେ କଥା କ'ଣ ମୁଁ ବୁଝିପାରୁନି ? ଆରେ ଆମେ ମଲେ କି ହଜିଲେ ନିଜ ଆଡୁ କେବେ ଫୋନ୍ କରି ପଚାରି ବୁଝିଛ କି ? ସବୁ ବାହାନା ।

ପ୍ରକାଶ ମାଆ ତୁ କାହିଁକି ତିଳକୁ ତାଳ କରୁଛୁ କହିଲୁ ?

ଅଞ୍ଜଳୀ ତିଳକୁ ତାଳ କରୁଛି ମୁଁ ନୁହେଁ ? ହେଲା, ଭଲ ହେଲା । ସେଇଟା ମୋର ସ୍ୱଭାବ ବୋଲି ଧରିନେ । ହେଲେ ଜାଣିଥା ଯାହା କହିବି ସତ କହିବି, ହକ୍ କଥା କହିବି ଆଉ ସାମନାରେ କହିବି । ତେଣିକି ଏମୁଣ୍ଡ ରହିଲେ ରହୁ, ଗଲେ ଯାଉ ।

ପ୍ରଣତି ହଉ ହେଲା ସବୁ ଆମର ଭୁଲ । ତୁ ଟିକିଏ ଥୟ ହେଲୁ । ଚାଲ ରୋଷେଇ ଘରକୁ ଚାଲ ରୋଷେଇ କରିବା ।

ଅଞ୍ଜଳୀ ହଁ, ମୁଁ ତ ଜନମ ହେଇଛି, ଜୀବନସାରା ଖାଲି ସମସ୍ତଙ୍କୁ ରୋଷେଇ କରି ଖାଇବାକୁ ଦେବି । ସେଇଥିରେ ପୁଣି ସମସ୍ତେ ଲୁଣିଆ ଅଲଣା ବାରି ଗଞ୍ଜଣା ଦେବେ । ଏ ଘରେ ମୋର ଆଉ କାମ କ'ଣ କି ? (କାନ୍ଦିଲେ) (ଦିନେଶ ବିକାଶକୁ ଠାରି ଦେଲେ)

ବିକାଶ (ମାଆକୁ କୁଣ୍ଢେଇ) ହଉ ହେଲା ଆମର ସବୁ ଭୁଲ୍ ହୋଇଗଲା । କ'ଣ କରିବା କହ ? ବୋହୂମାନେ ତ ଚାକିରି କରିଛନ୍ତି । ସେମାନେ କ'ଣ ଆଉ ଚାକିରି ଛାଡ଼ି ଘରେ ବସିବେ । ତୁ ଆମକୁ ପଛେ ଦି'ଚାରି ପାହାର ପକା ହେଲେ ସେମାନଙ୍କୁ ଚାକିରି ଛାଡ଼ିବା କଥା କହନା ।

ଅଞ୍ଜଳୀ (କାନ୍ଦି) ଦି' ଦି'ଟା ପୁଅ ଜନମ କରି ଗର୍ବରେ ଛାତି ଫାଟି ପଡୁଥିଲା । ଆଉ ଚିନ୍ତା କ'ଣ, ବୁଢ଼ା କାଳକୁ ପୁଅମାନେ ସେବା କରିବେ, ବୋହୂ ପରଷା ଖାଇବି । ଗୋଡ଼ ଲମ୍ବେଇ ନାତି ନାତୁଣୀମାନଙ୍କୁ ରାଜାରାଣୀ ଗପ କହିବି, ଧୋ ରେ ବାଇଆ ଧୋ ଗୀତ ଗାଇ ଶୁଆଇ ଦେବି । ଗର୍ବ ଗଞ୍ଜନ ନରହରି ଗର୍ବ ନ ରଖନ୍ତି କାହାରି । ମୋର ସବୁ ଗର୍ବ ଖଣ୍ଡନ କରିଦେଲେ । ସବୁ ଆଶା ମୋର ଚୁଲିକି ଗଲା । ଏବେ ବୁଢ଼ୀ କାଳେ ଚୁଲୀ ମୁଣ୍ଡରେ ବସି ଭଜା, ତିଅଣ ରାନ୍ଧୁଛି, ଆଉ ପୁଅଝିଅ ସବୁ ବାପାଙ୍କ ସାଙ୍ଗରେ ମିଶି ଶାଶୁ ନଣନ୍ଦଙ୍କ ଭଳିଆ ଲୁଣିଆ ଅଲଣା କହି ଗଞ୍ଜଣା ଦେଉଛନ୍ତି ।

ଦିନେଶ ମୁଁ ପୁଣି କ'ଣ କହିଲି ?

ଅଞ୍ଜଳୀ କହିନ ? ଏଇନେ କହିଲ ପରା ବାପ ଘରକୁ ପଳା । ମୋ' ବାପାମାଆ ବଞ୍ଚିଥିଲେ ସେକଥା କହିବାକୁ ପଡ଼ିନଥାନ୍ତା ।

ପ୍ରଣତି ବାପା ତୁମେ ଚୁପ୍ କର – ମାଆ ଚାଲ । (ଦୁହେଁ ଭିତରକୁ ପ୍ରସ୍ଥାନ) ।

ପ୍ରକାଶ ଦେଖିଲ ତ ବାପା ! ମାଆର ଆମ ଉପରେ ଧାରଣା କ'ଣ ?

ଦିନେଶ ଏକା ତୋ' ମାଆ ନୁହେଁ । ବର୍ତ୍ତମାନ ପୀଢ଼ିର ସବୁ ବାପାମାଆଙ୍କ ମନରେ ସେଇ ଏକା ଦୁଃଖ, ଏକା କ୍ଷୋଭ ।

ବିକାଶ କାହିଁକି ବାପା ? ଏଥିରେ ଆମର ଦୋଷ କ'ଣ ?

ଦିନେଶ ତୁମେ ଯେ ସଂପୂର୍ଣ୍ଣ ନିର୍ଦ୍ଦୋଷ, ସେକଥା ମୁଁ କହିପାରିବି ନାହିଁ ଏବଂ ଏଭଳି ପରିସ୍ଥିତିରେ ତୁମମାନଙ୍କର କ'ଣ କରିବା ଉଚିତ, ସେକଥା ତୁମେ ନିଜକୁ ପଚାର। ନିଜର ବିବେକକୁ ପଚାର । ତା'ପରେ ଠିକ୍ କର ତୁମର କ'ଣ କରିବା ଉଚିତ୍ ।

ପ୍ରକାଶ ତେବେ ଏ ସମସ୍ୟା ତ ଖାଲି ଆମ ପରିବାରର ନୁହେଁ। ଏମିତି ଅନେକ ପରିବାରର ସେଇ ଏକା ସମସ୍ୟା ।

ଦିନେଶ ଏ ସମସ୍ୟା ପୁରା ଦେଶର, ଏ ସମାଜରେ । କାରଣ ଏଠି ଭାରତୀୟ ସଭ୍ୟତାର ସେଇ ଘର, ପରିବାର ଆଉ ପରମ୍ପରା ଏବେ ଅବକ୍ଷୟମୁଖୀ। ଆଉ ତା' ସ୍ଥାନ ନେବାକୁ ପାଶ୍ଚାତ୍ୟ ସଭ୍ୟତାର ପରମ୍ପରା ଆଗେଇ ଆସୁଛି । ଆମେ ଏବେ ସେମିତି ଏକ ଦୋ' ଛକିରେ ଛିଡ଼ା ହୋଇଛୁ । ଯେଉଁଠାରୁ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସ୍ଥଳ ଆମକୁ ଅଜଣା । ଗୋଟିଏ ପନ୍ଥା ଛାଡ଼ିବାକୁ ଆମେ ପ୍ରସ୍ତୁତ ନୁହେଁ ଏବଂ ଅନ୍ୟ ପନ୍ଥାକୁ ସଂପୂର୍ଣ୍ଣ ଭାବେ ଆପଣେଇବା ଆମ ପାଇଁ ଅସମ୍ଭବ ମନେହେଉଛି । ଏଣୁ ସଠିକ୍ ପଥ ବାଛିବାକୁ ଏ ସମାଜକୁ ଆହୁରି ଅନେକ ସମୟ ଲାଗିବ ଆଉ ସେ ପର୍ଯ୍ୟନ୍ତ ଆମ ଭଳି ଗୋଟିଏ ଦୁଇଟି ପୀଢ଼ିକୁ ଏ ଯନ୍ତ୍ରଣା ଭୋଗିବାକୁ ପଡ଼ିବ ।

ବିକାଶ ପାଶ୍ଚାତ୍ୟ ଚଳଣିରେ ଅସୁବିଧା କ'ଣ ?

ଦିନେଶ ଯୌବନରେ ସେକଥା ଜାଣିପାରିବ ନାହିଁ । ବାର୍ଦ୍ଧକ୍ୟ ଆସିଲେ ଏକାକୀତ୍ୱ ଆସିଲେ, ନିର୍ଜନତାର ଯନ୍ତ୍ରଣା ଆସିଲେ ଉପଲବ୍ଧି କରିବ ଭାରତୀୟ ସଭ୍ୟତାର ମହତ୍ୱ । ପିଲାଦିନେ ଆମର ଯୌଥ ପରିବାର ଥିଲା । ବାପା, ବଡ଼ ବାପା, ଦାଦା ସମସ୍ତେ ମିଳିମିଶି ଗୋଟିଏ ଘରେ ରହୁଥିଲେ । ଘରର ଜଣେ ମୁରବୀ ଥିଲେ ତାଙ୍କର କଥା, ତାଙ୍କର ସିଦ୍ଧାନ୍ତ ଥିଲା ସର୍ବମାନ୍ୟ । ଏବେ ସମସ୍ତେ ରୋଜଗାର କରୁଛନ୍ତି । ଅର୍ଥର ଅହଂକାରରେ ନିଜେ ନିଜର ମାମଲତକାର । ଯେତେ ମଣିଷ, ସେତେ ଇଚ୍ଛା, ସେତେ ଅଧିକାର, ସେତେ ସ୍ୱାଧୀନତା । ଏଠି ଗୋଷ୍ଠୀ ସ୍ୱାର୍ଥ, ସମଷ୍ଟି ସ୍ୱାର୍ଥ ପ୍ରତି କାହାର ଚିନ୍ତା ନାହିଁ, ସମସ୍ତେ ସ୍ୱାର୍ଥପର । ଏକାନ୍ନବର୍ତ୍ତୀ ପରିବାର ଆଉ ନାହିଁ । ସେ ସ୍ଥାନରେ ଆସିଲା ଏକକ ପରିବାର। ବାପା, ମାଆ, ପୁଅ, ଝିଅର ପରିବାର। ସେ ପରିବାର ମଧ୍ୟ ଏବେ ଧ୍ୱଂସମୁଖୀ ଏବେ ମାଇକ୍ରୋ ପରିବାରର ସ୍ୱପ୍ନ । ସବୁଠି କେବଳ ମୁଁ ଆଉ ମୋର ବୋଲି କହିବାର ସ୍ୱର ଶୁଣାଯାଉଛି । ଆମେ ଆଉ ଆମର ବୋଲି କହିବାର ସତ୍ ସାହସ ଯେମିତି ଧୀରେ ଧୀରେ ଲୋପ ପାଇଯାଉଛି । ଏ ଦୁନିଆଁର ଗତି କୁଆଡ଼େ ବୁଝିପାରୁଛୁ ତ ?

ପ୍ରକାଶ ବୁଝିଲେ କ'ଣ ହେବ ବାପା, ଗ୍ଲୋବାଲାଇଜେସନ୍‌ର ପ୍ରଭାବରୁ ମୁକ୍ତି ପାଇବା ଏତେ ସହଜ ନୁହେଁ ।

ଦିନେଶ କଠିନ ନିଶ୍ଚୟ ତେବେ ଅସମ୍ଭବ ବି ନୁହେଁ । ଆଉ ସେଥିପାଇଁ ଦୃଢ଼ ମାନସିକତା ଦରକାର ।

ବିକାଶ କେମିତି ସମ୍ଭବ ? (ପ୍ରଣତିର ପ୍ରବେଶ)

ଦିନେଶ ଆରେ ପଳେଇ ଆସିଲୁ ଯେ ?

ପ୍ରଣତି ଶାଗ ବସେଇ ଦେଇ ଆସିଛି ।

ଦିନେଶ ହଁ କ'ଣ କହୁଥିଲି ତ... । ହଁ ଶୁଣ...ସମାଜର ଅଧିକାଂଶ ବ୍ୟକ୍ତି ଯାହା କରୁଛନ୍ତି ତାହା ଯେ ଆମ ପାଇଁ କରଣୀୟ ତା'ର କିଛି ଅର୍ଥ ନାହିଁ । ବଡ଼ ଲୋକମାନେ ସବୁବେଳେ ଅମଡ଼ା ବାଟରେ ଚାଲି, ଚାଲି ନୂଆ କିଛି ଆବିଷ୍କାର କରନ୍ତି । ତା'ପରେ ସେଇ ଅମଡ଼ା ବାଟ ସର୍ବସାଧାରଣଙ୍କ ପାଇଁ ନୂଆ ବାଟ ହୋଇଯାଏ । ସେମିତି ଆମ ସମସ୍ତଙ୍କୁ ନିଜର ରାସ୍ତା ନିଜକୁ ଖୋଜି ନେବାକୁ ପଡ଼ିବ । ବିଶ୍ୱକବି ରବୀନ୍ଦ୍ର ନାଥଙ୍କ ସେଇ ସଂଗୀତ ଭଳି । "ଯଦି ତୋର ଡାକ ଶୁନେ କେଓ ନା ଆସେ ତବେ ଏକଲା ଚଲୋରେ ।''

ପ୍ରଣତି ଏଇଟା କେବଳ ପୁରୁଷମାନଙ୍କ ପାଇଁ। କାରଣ ଆମ ସମାଜ ପୁରୁଷ ପ୍ରଧାନ । ଏଠି ନାରୀମାନଙ୍କର ପ୍ରାଧାନ୍ୟ ଏବେ ବି ନଗଣ୍ୟ ।

ଦିନେଶ — ଅବଶ୍ୟ ସତ୍ୟ। ପୁଅମାନଙ୍କୁ ପରିବାରର ସୁଖଶାନ୍ତି ପାଇଁ ସକ୍‌ଅବ୍‌ଜରଭର୍ ଭଳି କାମ କରିବାକୁ ପଡ଼େ । ଗୋଟିଏ ପଟେ ମାଆ ଅନ୍ୟ ପଟେ ସ୍ତ୍ରୀ । ଏ ଦୁହେଁ ଦୁଇଟି ମେରୁ ଭଳି ଏମାନଙ୍କୁ ଏକତ୍ର କରି ସଂସାର ଚଳେଇବା କିଛି କମ୍ ଗୁରୁତ୍ୱପୂର୍ଣ୍ଣ କଥା ନୁହେଁ । ଏଇଟା ଗୋଟିଏ କଳା। ଏ ଲିଭିଙ୍ଗ୍ ଆର୍ଟ। କାରଣ ବିଜ୍ଞାନ କହିଲା ଭଳିଆ Same pole repulses. (ସମସ୍ତେ ହସିଲେ)

ପ୍ରଣତି — ପୁଅ ପିଲାଙ୍କ ଦାୟୀତ୍ୱ ଭଳି ଆମ ଦାୟିତ୍ୱ ବି ତ କିଛି କମ୍ ନୁହଁ ବାପା ? ମୋ' କଥା ଦେଖୁନ ବାପା । ମାଆଙ୍କ କଥାରେ ପଡ଼ି ମୁଁ ଯଦି ସେମିତି ବ୍ୟବହାର କରିଥାନ୍ତି ତା'ହେଲେ ଆମ ଘର କେବେ ଠାରୁ ଭାଙ୍ଗି ସାରନ୍ତାଣି ।

ଦିନେଶ — ତୁ ଠିକ୍ କହିଛୁ ମାଆ । ତୋ' ପାଇଁ ମୁଁ ବହୁତ ଖୁସି । ସେଇଥିପାଇଁ ତ ଝିଅମାନଙ୍କୁ ଦୁହିତା କୁହାଯାଏ । ବାପଘର ହେଉ ଅବା ଶାଶୁଘର। ଦୁଇ କୁଳର ସେମାନେ ହିତ ଦେଖିଥାନ୍ତି ।

ପ୍ରକାଶ — ଏସବୁ ଏତେ ସହଜ ନୁହେଁ ବାପା ଏଥିପାଇଁ ଖୁବ୍ ସହନଶୀଳ ହେବା ଆବଶ୍ୟକ ।

ଦିନେଶ — ସହନଶୀଳ ହେବା ସାଙ୍ଗକୁ ବୁଦ୍ଧିମାନ ଆଉ ସତର୍କର ସହିତ ଜୀବନର ସମସ୍ତ ଟିକିନିଖି ସିଦ୍ଧାନ୍ତ ନେବାକୁ ପଡ଼ିବ । ବାଡ଼ି ଭଙ୍ଗିବ ଅଥଚ କାହାକୁ ଆଘାତ ଲାଗିବ ନାହିଁ । ପ୍ରୋବ୍ଲେମ୍ ସଲଭ୍ ହୋଇଯିବ କିନ୍ତୁ କାହାରି ସ୍ୱାଭିମାନ କ୍ଷୁଣ୍ଣ ହେବ ନାହଁ ।

ବିକାଶ — ଆଚ୍ଛା ବାପା - ଏଇ କଥା ଶିଖେଇବା ପାଇଁ କ'ଣ ଆମକୁ ଏଠିକି ଡାକି ଆଣିଛ ।

ଦିନେଶ — (ହସି) ତୁମେ କ'ଣ ସେଇଆ ଭାବୁଛୁ ?

ପ୍ରକାଶ — ତା'ହେଲେ ଆମକୁ ଡାକିବାର କାରଣ କ'ଣ କହୁନ ?

ପ୍ରଣତି — ଆମେ ଏହା ଭିତରେ ଅନେକ କଥା ଆଲୋଚନା କରି ସାରିଲୁଣି କିନ୍ତୁ କିଛି ବୁଝିପାରୁନୁ । ଏଥର କଥାଟା ଖୋଲି କୁହ ।

ଦିନେଶ — (ହସି) ବ୍ୟସ୍ତହୁଅନା କିଛି ଖରାପ କଥା ନୁହେଁ । ଅବଶ୍ୟ ବିଷୟଟା ଗମ୍ଭୀର । ଧୈର୍ଯ୍ୟ ଧର । ସମୟ ଆସିଲେ ନିଶ୍ଚୟ ଜାଣିପାରିବ ।

ଅଞ୍ଜଳୀ — (ପ୍ରବେଶୀ) ପରନିନ୍ଦା, ପରଚର୍ଚ୍ଚା ସାରିଲାଣି ଯଦି । ଲୁଣିଆ ଅଲଣା ଖାଇବ ଆସ । (ସମସ୍ତେ ସମସ୍ତଙ୍କୁ ଅନେଇଲେ) (ଅନ୍ଧାର)

## ତୃତୀୟ ଦୃଶ୍ୟ

(ଡ୍ରଇଂ ରୁମ୍ । ସମୟ ଓପରବେଳା । ସମସ୍ତେ ବିଶ୍ରାମ ନେଉଛନ୍ତି । ପ୍ରବେଶ କଲେ ଅସିତ୍)

ଅସିତ୍ — (ଭିତରକୁ ଆସି) ଭିତରକୁ ଆସିପାରେ କି ?

ଦିନେଶ — ଆରେ ଆସ । ତୋ' ଆସିବା ବାଟକୁ ଚାହିଁ ସମସ୍ତେ ବ୍ୟସ୍ତ ହୋଇପଡ଼ିଲେଣି ।

ଅସିତ୍ — କାହିଁକି ମୋର ଆସିବା ତ ଡେରି ହୋଇନି (ସମସ୍ତେ ଅସିତକୁ ନମସ୍କାର କଲେ) ଆଉ ସବୁ ଖବର କ'ଣ ? ସବୁ କୁଶଳ ମଙ୍ଗଳ ତ ?

ପ୍ରକାଶ — ଏକ ପ୍ରକାର ଭଲ । ଆପଣ କେମିତି ଅଛନ୍ତି ?

ଅସିତ୍ — ହଁ ସେମିତି ଚାଲିଛି । କାହିଁ ମ୍ୟାଡ଼ାମ୍‌ଙ୍କର ତ ଦେଖା ନାହିଁ ? (ଦିନେଶକୁ) କ'ଣ କିରେ ତମ ହେଡ୍‌ମାଷ୍ଟରଙ୍କ ଦେହପା' ଭଲ ଅଛି ତ ?

ଦିନେଶ — ଦେହ ଭଲ ଅଛି ହେଲେ ମୁଡ୍‌ଟା ଟିକିଏ ବିଗିଡ଼ି ଯାଇଛି ।

ଅସିତ୍ — ପିଲାମାନଙ୍କୁ ଦେଖିଲା ପରେ ତାଙ୍କ ମୁଡ୍ ତ ହ୍ୟାପି ନୋଟ୍‌କୁ ଚାଲିଆସିବା କଥା ।

ପ୍ରକାଶ — ଆମେ ଆସିବା ପୂର୍ବରୁ ମାଆଙ୍କ ମୁଡ୍ ଖରାପ ଥିଲା ନା କ'ଣ ?

ଅସିତ୍ — ନା ନା । ସପ୍ତାହେ ତଳେ ଆସିଥିଲି । ପକୁଡ଼ି ଚା' ଖାଇକି ଗଲି । ମୁଡ୍ ତ ପୁରା ପ୍ରଗଲ୍ଭ ଥିଲା । ଏଇ ତୁମକୁ ଦେଖି ଟିକିଏ ଇମୋସ୍‌ନାଲ୍ ହୋଇପଡ଼ିଥିବ ବୋଧହୁଏ ।

ବିକାଶ — ବାପା ମଜାରେ ମଜାରେ କ'ଣ ଟିକିଏ କହିଦେଲେ ଯେ ମାଆ ରାଗି ଖପ୍ପା ।

ଅସିତ୍ — (ପ୍ରଣତିକୁ) ଝିଅ ମାଆକୁ ଡାକିଲୁ ?

ପ୍ରଣତି — ରାଗିକି ଶୋଇଛି । ଏଇନେ ଡାକିଲେ ଶୋଧିବ କି କ'ଣ ? ମୋତେ ଡର ଲାଗୁଛି ।

ଅସିତ୍ — ହଉ ହଉ କାହାରି ଡାକିବା ଦରକାର ନାହିଁ । ମୁଁ ଡାକୁଛି । (ଜୋର୍‌ରେ) ଭାଉଜ ଗେଷ୍ଟ ଆସିଲେଣି ପରା । ଆଉ କ'ଣ ଶୋଇଲେ ଚଳିବ ? ଗରମା ଗରମ ହର୍ବାଲ ଚା' ଟିକିଏ ମିଳୁ । ଆଉ କିଛି ଆଣିବ ନାହିଁ । ପେଟ ପୁରା ଫୁଲ୍ । ଖାଲି ଚା', ଆଉ ପାଣି ।

ପ୍ରଣତି — ଯାଉଛି ମୁଁ ଚା' କରି ଆଣୁଛି ।

ଅସିତ୍ — ନାଇଁ ନାଇଁ ତୁ ଖାଲି ପାଣି ଗ୍ଲାସେ ଆଣ। ସେ ଚା' କରି ଆଣିବେ ।

ପ୍ରକାଶ — ମାଆ ପରା ରାଗିଛି । ଏଇନେ ଉଠିବ କି ନାହିଁ ।

ଅସିତ୍ — ତୁମେ ସିନା ତାଙ୍କର ପୁଅଝିଅ । ହେଲେ ତୁମେ ତାଙ୍କ ଭିତରର ମଣିଷକୁ ଠିକ୍ ଭାବେ ଚିହ୍ନି ପାରୁନ । ତାଙ୍କର କଥା ବେଳେ ବେଳେ ରୁକ୍ଷ ଲାଗେ ସତ । କିନ୍ତୁ ମନଟା ସବୁବେଳେ ସରଳ, ନିଷ୍କପଟ ।

ଦିନେଶ — ଠିକ୍ ନାରିକେଳ ସଦୃଶ । ନୁହେଁରେ ଅସିତ୍ । ମିଛକୁ ମହାଜନେ କହିଛନ୍ତି, 'ଗୁଣ ଚିହ୍ନେ ଗୁଣିଆ, ସୁନା ଚିହ୍ନେ ବଣିଆ।' (ହସିଲେ ସମସ୍ତେ)

ଅସିତ୍ — ଆଉ କ'ଣ ? ତୋ' ଠାରୁ ସିଏ ଅନେକ ଭଲ ।

ଦିନେଶ — ଯାହାହେଉ ତୋ' ଭଳି ଗୋଟିଏ ନିରୁତା ପ୍ରଶଂସକ ପାଇଁ ଘରଣୀ ଆମର କୃତାର୍ଥ । ଆରେ ଏଇଟା ଆଉ ଚା' ପକୁଡ଼ିର କରାମତି ନୁହେଁ ତ ? (ହସିଲେ)

ପ୍ରଣତି — (ପାଣି ଦେଇ) ଆଣ୍ଟି କେମିତି ଅଛନ୍ତି ?

ଅସିତ୍ — ସେମିତି ଠିକ୍ ଠାକ୍ । (ପାଣି ପିଇଲେ)

ଦିନେଶ — (ପ୍ରଣତିକୁ) ତୋ' ମାଆ ଉଠିଲାଣି ?

ପ୍ରଣତି — ହଁ ମୁହଁ ହାତ ଧୋଇ ରୋଷେଇ ଘରକୁ ଗଲା ।

ଦିନେଶ — ମେଘ ସେମିତି ଘୋଟେଇ ଅଛିନା ସୂରୁଯ ମୁହଁ କାଢ଼ିଲେଣି ?

ପ୍ରଣତି — ପାଗ ଟିକିଏ ସଫା ହେଲାଣି । କିନ୍ତୁ ସୂର୍ଯ୍ୟ ବାହାରିନି । (ସମସ୍ତେ ହସିଲେ)

ଅସିତ୍ — ମୁଁ ଆସିବା ଆଗରୁ ପରିସ୍ଥିତିଟା ବେଶ୍ ଗମ୍ଭୀର ଥିଲା ଭଳି ଲାଗୁଛି ।

ପ୍ରକାଶ — ଥିଲା ନୁହେଁ । ଏବେ ବି ଅଛି ?

ବିକାଶ — ଆପଣ ଯଦି ପାରିବେ ଦେଖନ୍ତୁ । ଆମେ ତ ଆପଣଙ୍କୁ ଅପେକ୍ଷା କରି ବସିଛୁ ।

ଦିନେଶ ପାରିବ ମାନେ ନିଶ୍ଚୟ ପାରିବ । ଓକିଲାତି ପଢ଼ିଛି କେଡ଼େ କେଡ଼େ ଜଟିଳ ପରିସ୍ଥିତିକୁ ଚୁଟ୍‌କିରେ ସମାଧାନ କରିଦେଇଛି ସିଏ । ନା କ'ଣ କହୁଛୁ ଅସିତ୍ ?

ଅସିତ୍ କୋର୍ଟ ଭିତରେ ଓକିଲାତି କରିବା ଅପେକ୍ଷା ଘର ଭିତରେ ଓକିଲାତି କରିବା ଅତ୍ୟନ୍ତ କଠିନ କାର୍ଯ୍ୟ । କାରଣ ସେଠି ଜଜ୍ ହେଲେ ମାଇ ଲର୍ଡ଼୍ କିନ୍ତୁ ଏଠି ତାଙ୍କ ନାଁ ହର ମେଜେଷ୍ଟି । ସେଠି ସବୁ ରାୟ ତର୍କ ଆଉ ତଥ୍ୟ ଉପରେ ନିର୍ଭର କରେ କିନ୍ତୁ ଏଠି ତର୍କ ଆଉ ତଥ୍ୟ ଯେତେ ଯାହା ହେଉ ମୁଡ୍ ଠିକ୍ ନ ଥିଲେ ସବୁ ତର୍କ ଆଉ ତଥ୍ୟ ଫିକା ପଡ଼ିଯିବାର ବାପା । ସ୍ୱୟଂ ବ୍ରହ୍ମା ତ ପାରିବେ ନାହିଁ । ଆମେ ଅବା କେଉଁ ଗାଈର ଗୋବର । ତେବେ ଏ କ୍ଷେତ୍ରରେ ମୋତେ କିଛି କହିବାକୁ ବା କରିବାକୁ ପଡ଼ିବ ନାହିଁ । କାରଣ ଭାଉଜଙ୍କର ପ୍ରକୃତି ଯାହା, ଘରକୁ ଗେଷ୍ଟ ଆସିଲେଣି ମାନେ, ଚା' ଜଳଖିଆ ଦେଇ ଅତିଥି ଚର୍ଚ୍ଚାରେ କେବେ ଅବହେଳା ହୋଇନି କି ହେବାର ସମ୍ଭାବନା ମଧ୍ୟ ଆଦୌ ନାହିଁ । ତୁମେମାନେ ନିଶ୍ଚିନ୍ତ ରୁହ ।

ଦିନେଶ ମୁଁ କେତେବେଳୁ ନିଶ୍ଚିନ୍ତ ଅଛି । ଖାଲି ଏମାନେ ସାମାନ୍ୟ ଚିନ୍ତିତ ଆଉ ବିଚଳିତ ମଧ୍ୟ ।

ଅସିତ୍ ତା'ହେଲେ ଅସଲ କଥାଟା ଏବେ ଆରମ୍ଭ କରାଯାଉ ।

ପ୍ରକାଶ ଆମେ ତ କେତେବେଳୁ ସେଇ ପ୍ରସଙ୍ଗକୁ ଅପେକ୍ଷା କରିଛୁ ।

ଅସିତ୍ ତୁ କ'ଣ କିଛି ଆଭାସ ଦେଇନୁ ।

ଦିନେଶ ନା...ରହ ଆଉ ଟିକିଏ ଅପେକ୍ଷା କର। ତୋ' ଚା'ଟା ଆଗ ଆସିଯାଉ ।

ବିକାଶ ଚା'ଟା କଥା ମଝିରେ ଆସିଲେ କ'ଣ ଚଳିବନି ?

ଦିନେଶ ଇନ୍‌ଫେକ୍ଟ ତୋ' ମାଆ ଆଗ ଆସିଯାଉ । ମୁଁ ଚାହୁଁଛି ସମସ୍ତଙ୍କ ସାମନାରେ ଆଲୋଚନା ହେଲେ ଭଲ । (କଲିଂବେଲ୍ ବାଜିଲା, ଦେଖିଲୁ କିଏ ଡାକୁଛି ।) (ବିକାଶ ତା' ସାଙ୍ଗରେ ଆସିଲେ ଦିନେଶର ସାନଭାଇ ଆକାଶ)

ଆକାଶ (ଭାଇଙ୍କୁ ଜୁହାର ହେଲା ଓ ଅସିତ୍‌କୁ) ଭାଇ ଜୁହାର ।

ଅସିତ୍ ଆରେ ଆକାଶ ? କ'ଣ ଗାଁରୁ ଆସିଲୁ ? ଏକା ନା ସାଙ୍ଗରେ ଆଉ କିଏ ?

ଆକାଶ ଗାଁରୁ ଆସିଛି, ଏକା । ଏଇଠି ଟିକିଏ କାମ ଥିଲା ତ ?

ଅସିତ୍ କ'ଣ ଭାଇ ପାଖରେ ? ବ୍ୟାଗରେ କ'ଣ ?

ଆକାଶ ଅଳ୍ପ କିଛି ପରିବା ପତ୍ର / ବଗିଚାରେ ହୋଇଥିଲା, ଆଉ ନଡ଼ିଆ ୪ଟା ।

ଦିନେଶ ହଉ ହଉ ଆଗ ଭିତରକୁ ଯା' ଗୋଡ଼ ହାତ ଧୋଇ ଆଗ ସାଷ୍ଟାମ ହୁଅ । ପ୍ରଣତି ! ମାଆକୁ କହ ତାକୁ ଜଳଖିଆ ଦେବ । (ଆକାଶ, ପ୍ରଣତି ପ୍ରସ୍ଥାନ)

ଅସିତ୍ ଆକାଶକୁ ଡକେଇଛୁ ବୋଲିତ ମୋତେ କହିନଥିଲୁ ।

ଦିନେଶ ନା ନା ମୁଁ ଡକେଇନି, ସିଏ ମନକୁ ଆସିଛି, କ'ଣ କାମ ଥିଲା କହୁଥିଲା । ମୁଁ ଜାଣିନି ।

ଅସିତ୍ ତା' ସାମନାରେ ସବୁ କଥା ଆଲୋଚନା କରିହେବ ତ ?

ଦିନେଶ (ଟିକିଏ ଚିନ୍ତା କରି) ହଁ ! କିଛି ଅସୁବିଧା ନାହିଁ । ସିଏ ଜାଣିଲେ ଜାଣୁ, କିଛି କ୍ଷତି ନାହିଁ ।

ଆକାଶ (ଭିତରୁ ଆସିଲା ହାତରେ ଖଣ୍ଡିଏ ବାହାଘର କାର୍ଡ଼) (ଅସିତ୍‌କୁ ଦେଇ) ଭାଇ ନିମନ୍ତ୍ରଣ କଲି ଆର ମାସ ୧୮ ତାରିଖରେ ମୋ' ଝିଅ ବାହାଘର, ନିଶ୍ଚୟ ଆସିବ ।

ଦିନେଶ କ'ଣ "ବାଟରେ ଦେଖିଲି କମାର,
ଫାଳ ପକେଇଦେ ଆମର ।''

ଆକାଶ ତା'ହେଲେ ଥାଉ ଘରେ ନେଇ ଦେଇ ଆସିବି ।

ଅସିତ୍ ଆରେ ନା ନା ଏମିତି ମଜାରେ କହିଲି। ଛୋଟ ଛୋଟ କଥାକୁ ଧରିଲେ ହେବ। ଦେ (ନେଲେ) ହେଲେ ଯିବା କଥା କହିପାରିବିନି ।

ଆକାଶ ଆମେ ଭାଇ ଗରିବ। ଚାଷୀ, ମଳିମୁଣ୍ଡିଆ ମଣିଷ । ତୁମେ ସହରରେ ରହି ବଡ଼ ଲୋକ ହେଲଣି । ଯିବ କହିଁକି ?

ଅସିତ୍ ଶୁଣ ଶୁଣ – ଏଇ ଡାଇଲଗ ଗୁଡ଼ା ତୋର ନିଜର, ନା ତୋ' ଭାଇ ଶିଖେଇଛି ଶୁଣେ ?

ଅଞ୍ଜଳୀ (ପଶି ଆସିଲେ ଚା' ଓ ପକୁଡ଼ି ଧରି ସାଙ୍ଗରେ ପ୍ରଣତି ମଧ ହାତରେ ପକୁଡ଼ି ପ୍ଲେଟ୍) କେହି କାହାକୁ ଶିଖେଇବା ଦରକାର ନାହିଁ । ସବୁ ଭାଇଙ୍କ ଡାଇଲଗ ସେମିତି ଛୁଞ୍ଚ ହୋଇ ପଶିବ ଆଉ ଶାବଳ ହୋଇ ବାହାରିବ । କ୍ଷତ ହେବ ହେଲେ ଦିଶିବ ନାହିଁ । ରକ୍ତ ଝରିବ ସତ ହେଲେ ପ୍ରମାଣ ମିଳିବ ନାହିଁ ।

ଅସିତ୍ ଭାଉଜ ନମସ୍କାର ! ଚା' ସାଙ୍ଗରେ ପକୁଡ଼ି ଆଣିଲ କାହିଁକି ?

ପ୍ରକାଶ ଆମେ ସମସ୍ତେ ବି ଖାଇବୁ । (ସମସ୍ତେ ନେଲେ)

ଅସିତ୍ ହଉ ଭାଉଜ ବସିଲ ବହୁତ କଥା ଅଛି ।

ଅଞ୍ଜଳୀ ମୋ' ସାଙ୍ଗରେ ? କି କଥା ?

ଅସିତ୍ ବସିଲେ ସିନା କହିବି ।(ଅନ୍ୟମାନଙ୍କୁ) ସମସ୍ତେ ବସ । (ସମସ୍ତେ ବସିଲେ ଆକାଶ ଉଠି ଚାଲିଯାଉଥିଲା ।)

ଦିନେଶ କୁଆଡ଼େ ଯାଉଛୁ ବସୁନୁ । ବସ ।

ଆକାଶ ଏଠି ତୁମ ଘରକଥା ଆଲୋଚନା ହେବ । ମୁଁ ବସିବାଟା...

ଦିନେଶ କିଛି ଅସୁବିଧା ନାହିଁ । ତୁ କ'ଣ ଆମ ଘରର କେହି ନୁହେଁ ? ହେଲେ ପାଟି ଫିଟାଇବାକୁ ନାହିଁ । ଚୁପ୍‌ଚାପ୍ ବସି ଶୁଣିବୁ ।

ଅସିତ୍ ବସୁନୁ ବସ... । କଥା ହେଲା... । ଆଚ୍ଛା ଦିନେଶ ତୁ କହିବୁ ନା ମୁଁ କହିବି ?

ଦିନେଶ ମୁଁ କହୁଛି । ଶୁଣ ପିଲାମାନେ ତୁମେ ବଡ଼ ହେଲଣି । ମୁଁ ବି ରିଟାୟାର୍ଡ଼ ହେଲିଣି । ଏଣିକି ମୋର ଇଚ୍ଛା ଯେ ମୋର ଯାହା ସ୍ଥାବର ଅସ୍ଥାବର ସଂପତ୍ତି ଅଛି ସେ ସବୁକୁ ସବୁ ପିଲାଙ୍କ ଭିତରେ ଭାଗ ବାଣ୍ଟି ଦେବାକୁ ଚାହେଁ ଏବଂ ସେଥିରେ ଯେମିତି କିଛି ଆଇନ୍‌ଗତ ସମସ୍ୟା ନ ରହେ ତେଣୁ ଅସିତ୍‌କୁ ଡାକିଛି । କାରଣ ସେ ଓକିଲ ଏବଂ ବନ୍ଧୁ ।

ଅସିତ୍ ତା' ସମ୍ପତ୍ତି କହିବାକୁ ଗଲେ ଏଇ ଘର ଖଣ୍ଡକ ଆଉ ଗାଁରେ ଘର ଡିହ, ବାଗ୍...

ଅଞ୍ଜଳୀ ଗାଁର ଜମିବାଡ଼ି ?

ଦିନେଶ — ସେ ସବୁ କେବେଠାରୁ ବିକ୍ରି ସରିଛି । ଗାଁର ଘର ତିଆରି ବେଳେ ଆଉ ବାପାମାଆଙ୍କର ଚିକିତ୍ସାରେ । (ଆକାଶ କିଛି କହିବାକୁ ଚାହୁଁ ଥିଲା ଦିନେଶର ଇସାରା ପାଇ ଚୁପ୍ ହେଲା)

ଅସିତ୍ — ଗାଁ ଡିହରେ ଘର ଖଣ୍ଡେ ଥିବାରୁ ତାହା ଭାଗ ହେବ ନାହିଁ । ଇଜମାଲି ସମ୍ପତ୍ତି ହୋଇ ସମସ୍ତଙ୍କର ଅଧିକାର ଭୁକ୍ତ ହେବ । ବାକି ରହିଲା ଏଇ ଘର ଖଣ୍ଡକ ।

ଦିନେଶ — ଅତଏବ ମୁଁ ଚାହେଁ । ଏଇ ଘରକୁ ବିକ୍ରି କରି ଯାହା ପଇସା ମିଳିବ ସେଥିରେ ଲୋନ୍ ସବୁ ଶୁଝିସାରିବା ପରେ ବଳକା ଅର୍ଥକୁ ସମସ୍ତଙ୍କୁ ସମାନ ଭାବରେ ବାଣ୍ଟି ଦେବି ।

ଅସିତ୍ — ଅର୍ଥାତ ଦୁଇ ପୁଅ, ଝିଅ ଓ ବାପା ମାଆ ।

ଦିନେଶ — ବାପା ନୁହଁ ଖାଲି ମାଆ । ସେ ଟଙ୍କା ଅଞ୍ଜଳୀ ନାମରେ ରହିବ ।

ଅଞ୍ଜଳୀ — ଘର ବିକି ଦେବ ରହିବ କେଉଁଠି ?

ଦିନେଶ — କିଏ ମୁଁ ନା ତୁମେ ?

ଅଞ୍ଜଳୀ — ଆମେ ।

ଦିନେଶ — ମୋ' କଥା ଛାଡ଼ି ତୁମ କଥା କୁହ ।

ଅଞ୍ଜଳୀ — ମୁଁ ଏକା କାହିଁକି ? ତୁମେ କୁଆଡ଼େ ଯିବ କି ? ତୁମେ ଯୁଆଡ଼େ ଯିବ, ଯାହା କରିବ, ମୁଁ ସେଆଡ଼େ ଯିବି, ଆଉ ସେଇଆ କରିବି ।

ପ୍ରକାଶ — ହେଲେ ମୁଁ ବୁଝିପାରୁନି । ଘର ବିକ୍ରି ହେବା କ'ଣ ନିହାତି ଦରକାର ?

ଦିନେଶ — ହଁ ଦରକାର ।

ବିକାଶ — କ'ଣ ପାଇଁ ଦରକାର କହୁନ ?

ଦିନେଶ — ଲୋନ୍ ସବୁ ଶୁଝିବି ।

ଅଞ୍ଜଳୀ — ଖାଲି ଏଇ ଲୋନ୍ ଶୁଝିବ ବୋଲି ଘର ବିକିବ ? ଲୋନ୍ ଏମିତି କେତେ କି ?

ଦିନେଶ — ତୁମେ କ'ଣ ଜାଣିନ ? ଦୁଇ ପୁଅଙ୍କ ପାଠପଢ଼ିବା ଲୋନ୍ ଏ ପର୍ଯ୍ୟନ୍ତ ବ୍ୟାଙ୍କରେ ଗଡୁଛି । ଝିଅ ବାହାଘରର ହାତ ଉଧାରି ଲୋନ୍ କ'ଣ ସବୁ ସୁଝା ହେଲାଣି ? ଏଇ ଘର ତିଆରି ପାଇଁ ଯେଉଁ ଲୋନ୍ ହୋଇଥିଲା ସିଏ କ'ଣ ସୁଝା ସୁଝି ହେଲାଣି ? ସବୁଜାଣି ଅଜଣା ଚାଉଳରେ ଭାତ ଖାଇଲା ଭଳିଆ କଥା ହେଉଛ ଯେ ?

ଅଞ୍ଜଳୀ — ସେଥିପାଇଁ ଘର ବିକିବା ଦରକାର କ'ଣ ? ଯାହାର ଲୋନ୍ ସେ ଶୁଝିବ ? ସେମାନଙ୍କ ପାଠପଢ଼ା ଲୋନ୍ ସେମାନେ ଶୁଝିବେ ।

ଦିନେଶ — ଆଉ ଝିଅ ବାହାଘର ଲୋନ୍ କ'ଣ ଝିଅ ଶୁଝିବ ?

ଅଞ୍ଜଳୀ — ସେଇଟା ତୁମ ରିଟାୟାର୍ଡ଼ ଟଙ୍କାରୁ ଶୁଝି ଦିଅ ।

ଦିନେଶ — ଆଉ ଘର ଲୋନ୍ ?

ଅଞ୍ଜଳୀ — ତୁମ ପେନ୍‌ସନ୍ ପଇସାରେ ଧୀରେଧୀରେ ଶୁଝିଦେବ ।

ଦିନେଶ — ପେନ୍‌ସନ୍ ପଇସାରେ ଲୋନ୍ ଶୁଝିବି ? ଆଉ ଖାଇବ କ'ଣ, ପିନ୍ଧିବ କ'ଣ, ଚଳିବ କେମିତି ? କଥାରେ ନାହିଁ "ଜମି ବିକି ପାଇଖାନା କଲି, କ'ଣ ଖାଇ ଏବେ ଝାଡ଼ା ବସିବି ?" ତା'ଛଡ଼ା ମୋ' ଅନ୍ତେ ଏଇ ଘର କିଏ ପାଇବ ?

ଅଞ୍ଜଳୀ ଯିଏ ନେଉଛି ନେଉ ? ତୁମେ ଥିବ ଯେ ଦେଖିବ ?

ଦିନେଶ ସେ କଥା ହୋଇପାରିବ ନାହିଁ । "ବାପ ଲଗେଇଲା ତାଳ ପୁଅକୁ ହେଲା କାଳ ?'' ଭାଇ ଭାଇ ଭିତରେ ଝଗଡ଼ା ଲାଗିବ, କୋର୍ଟ କଚେରୀ ହେବ । ନା ନା । ମୁଁ ଥାଉଁ ଥାଉଁ ଏହାର ସମାଧାନ କରି ନ ଦେବି କାହିଁକି ? (ପୁଅଝିଅଙ୍କୁ) ନା କ'ଣ କହୁଛ କୁହ ?

ପ୍ରଣତି ମୁଁ ଏଇ ଘର କିମ୍ବା ଟଙ୍କା ପାଇଁ ଭାଇ ମାନଙ୍କ ସାଙ୍ଗରେ ଝଗଡ଼ା କରିବି ? କେବେ ନୁହେଁ ।

ଅଞ୍ଜଳୀ ତୋ ଶାଶୁ, ଶଶୁର କି ଜ୍ୱାଇଁ ?

ପ୍ରଣତି ସେମାନେ ସେଥିରେ ମୁଣ୍ଡ ପୁରାଇବେ କାହିଁକି ? ସେମାନଙ୍କର ଏଠି ଅଧିକାର କ'ଣ ? ନା ନା ସେ କଥା ମୁଁ କେବେ ବି କରାଇ ଦେବି ନାହିଁ । ସେ ଦାୟିତ୍ୱ ମୋର ।

ଅସିତ୍ ଭେରୀ ଗୁଡ଼୍ (ଭାଇ ମାନଙ୍କୁ) ଆଉ ତୁମ ଇଚ୍ଛା ।

ପ୍ରକାଶ ଯାହା ଆପଣମାନଙ୍କ ଇଚ୍ଛା ।

ଦିନେଶ (ବିକାଶକୁ) ତୋ' ମତ କ'ଣ ?

ବିକାଶ ଆପଣ ଯାହା କରିବେ ।

ଦିନେଶ ଏଇ ଘର ମୁଁ ଯେବେ ତିଆରି କରିଥିଲି ସେତେବେଳେ ଭାବିଥିଲି ଏଇଠି ପୁଅ ବୋହୂ ନାତି ନାତୁଣୀ ରହିବେ । ସେ କଥା ତ ଆଉ ହେଲାନି କିମ୍ବା ହେବାର ସମ୍ଭାବନା ବି ନାହିଁ । ଏବେ ଆମେ ଏଠି ଏ ଘରେ ନିର୍ଜନ ଦ୍ୱୀପରେ ଏକାକୀ ଗୃହବନ୍ଦୀର ଜୀବନଯାପନ କରୁଛୁ । ଆମ ପାଖରେ ନା ଅଛନ୍ତି କୁଳକୁଟୁମ୍ବ ନା ଅଛନ୍ତି ବନ୍ଧୁ ବାନ୍ଧବ । ଆମ ସୁଖରେ ଦୁଃଖରେ ଆହା ପଦେ କରିବାକୁ ମଣିଷଟିଏ ନାହାଁନ୍ତି । ଆମେ ଅସୁସ୍ଥ ହେଲେ ଔଷଧ ଟିକିଏ ଦେବାକୁ କେହି ନାହାଁନ୍ତି । ଏମିତି ନିର୍ଜନ ଜୀବନର ବୋଝ ଆମକୁ ଦୁର୍ବିସହ କରିବା ଆରମ୍ଭ କଲାଣି । ଏବେ ତ ହାତଗୋଡ଼ ଚଳୁଛି ସେ ସବୁ ଅଚଳ ହୋଇଗଲେ ଅବସ୍ଥା କ'ଣ ହେବ ଆମେ ଉପଲବ୍ଧି କରିପାରୁଛୁ । ଆମେ ଆମର କର୍ତ୍ତବ୍ୟ ସବୁ କରିସାରିଛୁ। ବାସ୍ ଏଣିକି ମୁଁ ଋଣ ମୁକ୍ତ ହୋଇ କେଉଁ ମଠ କି ଆଶ୍ରମରେ ଯାଇ ସୁଖରେ ରହିବି ?

ଅଞ୍ଜଳୀ ମଠ କି ଆଶ୍ରମରେ ଆମେ କାହିଁକି ରହିବା ? ଆମ ଭାଗରେ ଯାହା ପଇସା ମିଳିବ ଆମେ ତାକୁ ଧରି ଗାଁରେ ଯାଇ କାହିଁକି ନରହିବା ?

ଦିନେଶ ଗାଁକୁ ଯିବା କେଉଁ ମୁହଁରେ ? ଯେତେବେଳେ ବଳ ବୟସ ଥିଲା, ଆମ ଆଡ଼କୁ ସମସ୍ତେ ଅନେଇଥିଲେ, ସେତେବେଳକୁ ମୁଁ ତ ତାଙ୍କୁ ଅନେଇଲି ନାହିଁ । ମୁହଁ ମୋଡ଼ି ଦେଇ ନିଜ ସୁଖ ଦେଖିଲି । ଆଉ ଏବେ ଅଥର୍ବ ହୋଇଗଲା ପରେ ମୁଁ କ'ଣ ତାଙ୍କ ଉପରେ ବୋଝ ହେବାକୁ ଯିବି ? ଜୀବନସାରା ନଖାଇ ନ ପିଇ, ଯେଉଁମାନେ ମୋ' ସେବା ଯତ୍ନ କରିଥିଲେ, ମୋତେ ବଢ଼େଇ ମଣିଷ କରିଥିଲେ, ସେମାନଙ୍କୁ ତାଙ୍କୁ ବୁଢ଼ା ବୟସରେ ମୁଁ ଅନେଇ ନଥିଲି । ଏବେ ମୋ' ପିଲାମାନେ ମୋତେ ଅନେଇବେ କାହିଁକି ? ସେମାନଙ୍କୁ ମୁଁ ଯେଉଁ ସଂସ୍କାର ଦେଇଛି, ସେମାନେ ମୋତେ ଆଜି ସେଇ ସଂସ୍କାର ଦେଖାଉଛନ୍ତି । ସେଥିରେ ସେମାନଙ୍କର ଦୋଷ କ'ଣ ?

ପ୍ରକାଶ ମୁଁ ଚାକିରି କଲାପରେ ମୋ' ଲୋନ୍ କଥା କହି ମୋତେ ପଇସା ମାଗିଥିଲେ ମୁଁ କ'ଣ ଦେଇଥାନ୍ତି ?

ଅଞ୍ଜଳୀ ଏବେ ଦଉନୁ ?

| | |
|---|---|
| ପ୍ରକାଶ | କଥା କ'ଣ କି ? ତୁମ ମାନଙ୍କୁ ନ କହି ଆମେ ଗୋଟି ଥ୍ରୀ ବେଡ୍‌ରୁମ୍ ବାଲା ଫ୍ଲାଟ୍ କିଣିଛୁ । ୭୦ ଲକ୍ଷ ଦେଇ । ଆମ ଦୁହିଁଙ୍କ ଦରମାରୁ ଲୋନ୍ କଟୁଛି । ଏବେ ଆମେ ଖୁବ୍ ... |
| ଅଞ୍ଜଳୀ | ବିକାଶ ! ତୋ' ଲୋନ୍ ତୁ ଶୁଝି ଦେଉନୁ । |
| ବିକାଶ | ଆମେ ମଧ୍ୟ ଗୋଟିଏ ଫ୍ଲାଟ୍ କିଣିଛୁ ସେଲାରୀ ସ୍କିମ୍‌ରେ। ମାସକୁ ମାସ ଆମ ଦୁହିଁଙ୍କ ଦରମାରୁ ବେଶ୍ ମୋଟା ଅଙ୍କ କଟି ଯାଉଛି । |
| ପ୍ରଣତି | ମୋ' ବାହାଘରର ଲୋନ୍ କେତେ ଅଛି କୁହ ବାପା । ମୁଁ ମୋ' ଜିପିଏଫ୍‌ରୁ ଟଙ୍କା ଉଠେଇ ଦେଇ ଦେବି । |
| ଅଞ୍ଜଳୀ | ଜ୍ୱାଇଁ ରାଜି ହେବେ ତ ? |
| ପ୍ରଣତି | ସେ ଦାୟିତ୍ୱ ମୋର । ବାପା ! କୁହ କେତେ ଟଙ୍କା ଅଛି । |
| ଦିନେଶ | ହିସାବ କରି କହିବି । ତା'ହେଲେ ଘର ବିକିବା ଫାଇନାଲ୍ ହେଲା ତ ? |
| ଆକାଶ | ଭାଇ ମୁଁ ପଦେ କହିବି ? |
| ଦିନେଶ | ତୁ ଚୁପ୍ ରହ । ତୋତେ ପଚାରିଲେ କହିବୁ ନ ହେଲେ ନାହିଁ । (ଅଞ୍ଜଳୀ ଆକାଶକୁ ଅନେଇ ଉଠିଲା) |
| ଅଞ୍ଜଳୀ | ତୁମେ ସବୁ ଯାହା ସିଦ୍ଧାନ୍ତ ନେବା କଥା ନିଅ । ମୋ' ସିଦ୍ଧାନ୍ତ ମୁଁ ନେଇସାରିଛି । |
| ସମସ୍ତେ (ପ୍ରକାଶ ବିକାଶ,ପ୍ରଣତି) : | ମାଆ ତୁ ପୁଣି କ'ଣ କହୁଛୁ ? (ଅଞ୍ଜଳୀ ଧୀରେ ଧୀରେ ଆକାଶଆଡ଼କୁ ଆଗେଇଲା) |
| ଅଞ୍ଜଳୀ | ଏ କଥା ସତ ଯେ ବେଳେବେଳେ ଏ ଘର ଭାରି ଏକା ଏକା ଲାଗୁଛି । ଏଇ ଘର ଦିନେ ପିଲାମାନଙ୍କର ହସଖୁସିରେ ଫାଟି ପଡୁଥିଲା ଏବେ ସେଇ ଘର ଯେମିତି ଖାଇ ଗୋଡ଼ାଉଛି । ଏବେ ମୋର ପିଲାଦିନ କଥା ଭାରି ମନେ ପଡୁଛି । ସାଙ୍ଗସାଥି ଗାଁ ଭୂଇଁ ସବୁ ମନେ ପଡ଼ିଯାଉଛି । ଏଘର ବିକି ଯାହାକୁ ଯାହା ଦେବା କଥା ଦେଇ ଦିଅ । ମୋ' ଭାଗରେ ଯାହା ପଇସା ପଡ଼ିବ ତାକୁ ନେଇ ମୁଁ ପୁଅ ଝିଅ ପାଖକୁ ନୁହେଁ ବରଂ ଗାଁକୁ ଯାଇ ଆକାଶ ପାଖରେ ରହିବି । ଆକାଶ ତୁମେ ଆପତ୍ତି କରିବ ନାହିଁ ତ ? (ଅଞ୍ଜଳୀ କାନ୍ଦିଛି) |
| ଆକାଶ | ଭାଇ... ! ମୁଁ କିଛି କହିବି। |
| ଦିନେଶ | ହଁ...ଏଥର କ'ଣ କହିବୁ କହ । |
| ଆକାଶ | (ଆଖିରୁ ଲୁହପୋଛି) ଭାଇ ତୁମ ସମସ୍ତଙ୍କୁ ଯାହାସବୁ କହିଛନ୍ତି ସବୁ କଥା ସତ ନୁହେଁ । ସେ ଏଠି ଘର ରଖିବେ କି ବିକିବେ । ସେ କଥା ମୁଁ କହିପାରିବି ନାହିଁ । କିମ୍ବା ସିଏ ମଠରେ ରହିବେ କି ଆଶ୍ରମରେ ରହିବେ ସେ କଥା ମଧ୍ୟ ମୁଁ କହିପାରିବି ନାହିଁ । କିନ୍ତୁ ଭାଇ ଭାଉଜ ଯଦି ଚାହିଁବେ ତା' ହେଲେ ସେମାନେ ଗାଁରେ ରହିଲେ ମୁଁ ଅଧିକ ଖୁସି ହେବି । କାରଣ ତାଙ୍କ ଘର, ତାଙ୍କ ଜମି, ଜାଗା, ସେ ଭୋଗ କରିବେ। ମୁଁ ଆପତ୍ତି କରିବି କାହିଁକି ? |
| ଅସିତ୍ | କ'ଣ କହିଲୁ ଆକାଶ । ଦିନେଶର ଘର ଜାଗା କିଛି ବିକ୍ରି ହୋଇନି । ସବୁ ସେମିତି ଅଛି । |
| ଆକାଶ | ହୁଏତ ହୋଇଥାନ୍ତା । ଏଠୁ ଫେରିଲାପରେ ବାପା ମାଆ ସେଇ ସିଦ୍ଧାନ୍ତ ନେଇଥିଲେ ଜମି ବିକି ଦି'ବଖରା ଘର କରିବେ ବୋଲି । କିନ୍ତୁ ଭାଇ ଯାଇ ତାଙ୍କୁ କ'ଣ ବୁଝେଇଲେ କେଜାଣି ଦୁଇ |

ବଖରା ଜାଗାରେ ଚାରିବଖରା ଘର ତିଆରି ହେଲା ଅଥଚ ଜମି ବିକ୍ରି ହେଲାନି । ପରେ ଦିନେ ବାପା ମୋ' ଶଶୁରଙ୍କୁ କହୁଥିବାର ଶୁଣିଲି, "ବୁଝିଲ ସମୁଦି, ମୋ' ବଡ଼ ବୋହୂ ଟିକିଏ ତୁଣ୍ଡ ହୁଡ଼ିଟା ହେଲେ ମନରେ ଭିନ୍ନ ପ୍ରକାରର । ଘର ତିଆରି ସମୟରେ ପୁଅ ହାତରେ ତା' ଗହଣା ସବୁ ପଠେଇ ଦେଲା । କହିଲା ଯାକୁ ବିକି ଘର କରିବ। ମୁଁ କହିଲି, କ'ଣ ହେଲା ? ବୋହୂର ବାପଘର ଗହଣା ବିକି ଆମେ ଘର କରିବୁ । ଧିକ୍ ମୋ ଶଶୁର ପଣକୁ ।'' କିନ୍ତୁ ବାକି ରହସ୍ୟ କ'ଣ ମୁଁ କିଛି ଜାଣିନି ।

ଅଞ୍ଜଳୀ ମୋ' ଗହଣା ତ ଆମେ ସବୁ ଭାଙ୍ଗି ରୁଜି ଝିଅ ପାଇଁ ଗହଣା ବନେଇଥିଲି । ମୋ' ଗହଣା ସେଠିକି ପଠେଇଲି କେବେ ?

ଆକାଶ ସେ କଥା ମୁଁ କହିପାରିବି ନାହିଁ କି ସେ ଗହଣା ମୁଁ କେବେ ଦେଖିନି ତା' ବିଷୟରେ ଶୁଣିଛି କେବଳ ।

ଅଞ୍ଜଳୀ ବାପା, ମାଆଙ୍କର ଚିକିତ୍ସା ଖର୍ଚ୍ଚ ତାଙ୍କର ଶ୍ରାଦ୍ଧ ଶାନ୍ତି : ସେ ଖର୍ଚ୍ଚ ବେଳେ ଜମି ବିକ୍ରି କରିଥିବେ କାଳେ ?

ଆକାଶ ସେ ସବୁ ଖର୍ଚ୍ଚ ଅବଶ୍ୟ ଭାଇ କରିଛନ୍ତି କିନ୍ତୁ ଜମି ବିକ୍ରି ହୋଇନି । କାରଣ ସେତେବେଳେ ଜମି ଭାଗ ହୋଇନଥିଲା । ସେ ବିକିବେ କେମିତି ?

ଅସିତ୍ (ଦିନେଶଙ୍କୁ) ତୁ ପରା କହୁଥିଲୁ ଗାଁ ଜମି ସବୁ ଭାଗ ହୋଇସାରିଛି ।

ଆକାଶ ହଁ ଏବେ ଭାଗ ହେଲା ଏଇ କେଇ ମାସ ତଳେ । ମୋ' ସ୍ତ୍ରୀ "ବସୁଧା'' ବାରମ୍ବାର ଜମି ଭାଗ କଥା ଉଠେଇଲା । ମୁଁ ଭାଇଙ୍କୁ କହିଲି, ଭାଉଜଙ୍କୁ ନେଇ ଆସ, ସମସ୍ତେ ବସି ଜମି ଭାଗ କରିଦେବା । ଭାଇ ଏକା ଗଲେ କହିଲେ ତୋ' ଭାଉଜ ଆସିବନି ମନା କଲା । କହିଲା, ଭାଇ ଭାଇ ଭିତରେ ବସି ଭାଗ କରିନେବ ମୁଁ କାହିଁକି ତା' ଭିତରେ ମିଛଟାରେ ମୁଣ୍ଡ ପୁରାଇବି ? ସବୁ ସମ୍ପତ୍ତି ଭାଗ ହୋଇଗଲା। ଖାଲି ଘର ଆଉ ଡିହଟା ଇଜମାଲି ଅଛି । (ଅଞ୍ଜଳୀ ଦିନେଶଙ୍କୁ ଚାହିଁଲା । ଦିନେଶ ହସିଲେ ।)

ଦିନେଶ ତୁମେ ଯାହା କହିଥିଲ ମୁଁ ତାକୁ ସେଇଆ କହିଲି । ତୁମେ ଯଦି ଏବେ ଭୁଲି ଯିବ, ମୁଁ କ'ଣ କରିବି ? (ଅଞ୍ଜଳୀ ହସିଲେ)

ଅଞ୍ଜଳୀ ମୁଁ ଭୁଲିଯାଇଛି ନା' ତୁମେ ନୂଆ ପାଠ ପଢ଼ାଉଛ ମୁଁ ବୁଝିପାରୁଛି...

ଅସିତ୍ ଘର ଆଉ ଡିହଟା ଇଜମାଲି ରଖିଲ କାହିଁକି ?

ଆକାଶ କେଜାଣି ? ଭାଇ କହିଲେ, ଏ ଘର ବାପା କରିଥିଲେ ସେଇଟା ସମସ୍ତଙ୍କର ହୋଇ ରହିବ । ଏଠିକି ଆମର ପୁଅ, ଝିଅ, ନାତି, ନାତୁଣୀ ଯେତେବେଳେ ଯିଏ ଚାହିଁବ ଆସିବ । ଉଠ ବସ ହେବ । ଅତୀତର ସ୍ମୃତିକୁ ମନେ ପକେଇବାର ଚେଷ୍ଟା କରିବ । ଏଇଟା ସେମିତି ଥାଉ । ଏଇନେ "ବସୁଧା'' ତା'ର ଭୁଲ୍ ବୁଝିପାରିଛି । ଭିନ୍ନ ହୋଇଯିବା କଥାଟା ଉଠେଇବା ତା'ର ଉଚିତ୍ ନଥିଲା ।

ଦିନେଶ ଜମିବାଡ଼ି ଭାଗ ହୋଇଗଲା ଭଲ ହେଲା ପୁଅ ନାତିଙ୍କ ପାଇଁ ଅଡୁଆ ତୁଟିଗଲା ହେଲେ ହାଣ୍ଡିତ ଭାଗ ହୋଇନି ଏବେ ବି ମୁଁ ଗାଁକୁ ଗଲେ ଗୋଟିଏ ହାଣ୍ଡିରେ ଚାଉଳ ପଡୁଛି ନା ନାହିଁ ? ତା'ହେଲେ ପୁଣି ପୃଥକ ହେଲା କେଉଁଠି ?

ଆକାଶ ଭାଉଜ ଗୋଟିଏ କଥା କହିବି, "ରଖିବ ? ବସୁଧା ବୁଦ୍ଧିରେ ପଡ଼ି ଆମେ ଭିନ୍ନେ ଭାଗ ହୋଇଗଲୁ ବୋଲି ଆମକୁ ପର ବୋଲି ଭାବିବ ନାହିଁ । ଆସନ୍ତା ମାସରେ ମୋ' ବଡ଼ ଝିଅର ବାହାଘର ତା'ର କନ୍ୟାଦାନ ତୁମେ ଦି'ଜଣ କର୍ତ୍ତା ହୋଇ କରିବ । ସେଇଟା ଆମର ଇଚ୍ଛା । ଖର୍ଚ୍ଚବାର୍ଚ୍ଚ ସବୁ ମୁଁ କରିବି । ଖାଲି ବେଦୀରେ ବସି ତୁମେ ଦି'ଜଣ ବରକନ୍ୟାକୁ ଆଶୀର୍ବାଦ କରିବ ।

ଅସିତ୍ (କାର୍ଡ଼ ଦେଖି) ଆରେ ଭାଉଜ ଏଥିରେ ପରା କର୍ତ୍ତା ବୋଲି ତୁମ ଦି' ଜଣଙ୍କ ନାଁ କାର୍ଡ଼ରେ ଛପା ହୋଇଛି। ତୁମେ ଯିବାକୁ ବାଧ୍ୟ ।

ଅଞ୍ଜଳୀ ମୋତେ ନ ପଚାରି ମୋ' ନାଁରେ କାର୍ଡ଼ ଛାପିଲ କେମିତି ?

ଆକାଶ ଭାଇଙ୍କୁ ପଚାରିଥିଲି ।

ଅଞ୍ଜଳୀ (ଅସିତ୍‌କୁ) ଶୁଣିଲ ତ ଅସିତ୍ ବାବୁ । ମୋର ସବୁ ନିଷ୍ପତ୍ତି ସେ ନେବେ, ଆଉ ପଇସା ଭାଗ ହେଲାବେଳକୁ ମୋ' ଭାଗ ମୋର ତାଙ୍କ ଭାଗ ତାଙ୍କର ।

ଦିନେଶ ଏଥର ମୁଁ ପୁରା ଟେନ୍‌ସନ୍ ଫ୍ରି ... (ଆକାଶକୁ)। ଆକାଶ, ଏଥର ତୋ' ମନ ଖୁସି ତ ସବୁବେଳେ ତା'ର କମ୍ପ୍ଲେନ୍ ଭାଇ ତୁମେ ଏକା ଗାଁକୁ ଆସିଲ ଭାଉଜଙ୍କୁ ଆଣିଲ ନାହିଁ । ଭାଉଜ ଆମକୁ ପର ଭାବୁଛନ୍ତି...ଆମେ କ'ଣ ଦୋଷ କରିଛୁ କେଜାଣି ଇତ୍ୟାଦି ଇତ୍ୟାଦି - ଏଥର ଭାଉଜ ଦାୟିତ୍ୱ ତୋର...(ସମସ୍ତେ ହସିଲେ)

ଅସିତ୍ ଛାଡ଼ ସେ କଥା (ହସିଲେ) ତା'ହେଲେ ଏଇ ନିଷ୍ପତ୍ତି ହେଲା ଯେ ଘର ବିକ୍ରି ହେବ ।

ପ୍ରକାଶ ମୋ' ଲୋନ୍ ପାଇଁ ଘର ବିକ୍ରି କରିବା ଦରକାର ନାହିଁ । ମୋ ଲୋନ୍ ମୁଁ ଶୁଝିବି ? ବାପା ମୋ' କାଗଜପତ୍ର ମୋତେ ଦେଇଦିଅ ।

ବିକାଶ ମୋ' କାଗଜପତ୍ର ବି' ମୋତେ ଦେଇଦିଅ ବାପା । ମୋ' ଲୋନ୍ ମୁଁ ଶୁଝିବି ?

ଦିନେଶ ଦେଖ ଭାବିଚିନ୍ତି କୁହ ଲୋନ୍ ନ ଶୁଝିଲେ ମୁଁ ବନ୍ଧା ହେବି ଯେ। କାରଣ ମୁଁ ପରା ଗ୍ୟାରେଣ୍ଟର ଅଛି ।

ଅସିତ୍ କହିଲେ ପରା ସେମାନେ ଲୋନ୍ ଶୁଝିବେ । ତୁ ତାଙ୍କ କାଗଜପତ୍ର ଦେଇ ଦେଉନୁ ?

ଦିନେଶ ଠିକ୍ ଅଛି କାଲି ଗଲାବେଳେ ମୁଁ ସମସ୍ତଙ୍କୁ କାଗଜପତ୍ର ଆଉ ହିସାବ କରି ଧରେଇ ଦେବି ।

ଅସିତ୍ ଆଚ୍ଛା ମୁଁ ତା'ହେଲେ ଉଠିଲି ।

ଆକାଶ ବାହାଘରକୁ ଆସିବ ଭାଇ । (ଅନ୍ୟମାନଙ୍କୁ) ତୁମେମାନେ ସମସ୍ତେ ଛୁଆ ପିଲାଙ୍କୁ ଧରି ନିଶ୍ଚୟ ଆସିବ । ପ୍ରଥମ ବାହାଘରଟା ସମସ୍ତେ ଆସିଲେ ଭଲ ଲାଗିବ । (ପ୍ରଣତିକୁ) ପ୍ରଣତି ତୋ' ଘର ପାଇଁ କାର୍ଡ଼ ଆଉ ଗୁଆ ଚଳେଇବାକୁ ଆଣିଥିଲି । ତୋ' ହାତରେ ଦେଲେ ଚଳିବ ତ ?

ଅଞ୍ଜଳୀ ସେଇଟା କେମିତି କଥା । ସେମିତି କ'ଣ ସୁନ୍ଦର ଦିଶିବ ? ବାରିକ ହାତରେ ପଠେଇ ଥିଲେ ଚଳିଥାନ୍ତା । ତୁମେ ଆସିଛ ଯେତେବେଳେ ନିଜେ ତା' ସାଙ୍ଗରେ ଯାଇ ତା' ଶାଶୁ ଶଶୁରଙ୍କ ହାତରେ ନିମନ୍ତ୍ରଣ ପତ୍ର ଆଉ ଗୁଆ ଦେଇ ନିମନ୍ତ୍ରଣ କରିଆସ । ସେଇଟା ସୁନ୍ଦର ହେବ ।

ଆକାଶ ସେଇଟା ସତ ଯେ...ହେଲେ ମୁଁ ପରା ପ୍ରସ୍ତୁତ ହୋଇ ଆସିନି ।

ଦିନେଶ ଆଉ ପ୍ରସ୍ତୁତ ହେବୁ କ'ଣ ? ଲୁଗାପଟା ତ ପିନ୍ଧିଛୁ, ଗୁଆ, କାର୍ଡ଼ ତ ଆଣିଛୁ, ପ୍ରଣତି ସାଙ୍ଗରେ ଯିବୁ, କାର୍ଡ଼ ଦେଇ ପଳେଇ ଆସିବୁ । ଏଥିରେ ପୁଣି ପ୍ରସ୍ତୁତି କ'ଣ ?

ଆକାଶ (ଫୁସ୍ ଫୁସ୍ କରି) କ'ଣ ଖାଲି ହାତରେ ଯିବି ? ପିଲାପିଲି ଅଛନ୍ତି, ସମୁଦି ସମୁଦୁଣୀ ଅଛନ୍ତି...ମୋତେ ଖରାପ ଲାଗିବ ନାହିଁ ।

ଦିନେଶ ଓହୋ ତା'ହେଲେ ଘରକୁ ଯାଇ ପଇସା ପତ୍ର ନେଇ ସେଇ ବାଟେ ବାଟେ ଯିବୁ। କିନ୍ତୁ ଝିଅ ହାତରେ ନିମନ୍ତ୍ରଣ କରିବା ଠିକ୍ ହେବନି । ବୁଝିଲୁ।

ଅଞ୍ଜଳୀ (ହସି) ଆକାଶ...ଶୁଣିଲ । ତୁମର ପଇସା ଦରକାର ତ ? କେତେ ଟଙ୍କା ଦରକାର କହୁନ ?

ଆକାଶ ହଁ କିଛି ଟଙ୍କା ଧାର ଦେଇଥାଅ, ଗାଁକୁ ଗଲେ ଦେଇ ଦେବି । (ଅଞ୍ଜଳୀ ଭିତରକୁ ଗଲେ)

ଦିନେଶ (ଅସିତ୍‌କୁ) ଆରେ ତୁ ସେତେବେଳୁ ଯିବୁ ଯିବୁ ହଉଛୁ । ଅଥଚ ଏ ଯାଏ ଯାଇନୁ ତ ?

ଅସିତ୍ ଆରେ ଯିବି କ'ଣ ? ଏଠି ଯାହା ସବୁ ଘଟୁଛି ମୁଁ ତ କିଛି ବୁଝିପାରୁନି । ମୋ' ମୁଣ୍ଡ ପୁରା ଗୋଳମାଳ ହୋଇଯାଉଛି । ଭାବିଥିଲି କ'ଣ, ଆଉ ଘଟୁଛି କ'ଣ ? (ପ୍ରବେଶ କଲେ ଅଞ୍ଜଳୀ)

ଅଞ୍ଜଳୀ ଏଇ ନିଅ ହଜାରେ ଟଙ୍କା ଦେଇଛି । ଚଳିବଟି ?

ଆକାଶ ଏତେ ଟଙ୍କା କ'ଣ ହେବ ?

ଦିନେଶ ଥାଉ, କାଳେ ଦରକାର ହେବ । ଗାଁକୁ ଗଲେ ତ ଫେରେଇ ଦେବୁନା । ଆଉ ଚିନ୍ତା କ'ଣ ? ଝିଅ- ଯାଆ ରାତି ରୋଷେଇର ବ୍ୟବସ୍ଥା କର ।

ଦିନେଶ ଆଉ ତୁ କ'ଣ ତଥାପି ଯାଇ ନାହୁଁ ।

ଅଞ୍ଜଳୀ ନାଇଁ ରୁହ। ରାତି ଖାଇବା ଏଇଠି ଖାଇ ଯିବ ।

ଅସିତ୍ ଖାଇବି କ'ଣ ? ଏଠିକା ଘଟଣା ଦେଖିତ ପେଟ ପୁରିଗଲାଣି । ଆମ ଘରେ ଭାଇମାନେ ଯଦି ଏମିତି ହୋଇଥାନ୍ତେ । ତା'ହେଲେ ମୁଁ ବି ମୋ' ଗାଁ କୁ ଯାଉଥାନ୍ତି ।

ଦିନେଶ ତୁ ଭୁଲ୍ କହୁଛୁ । ଭାଇମାନଙ୍କୁ ଦୋଷ ଦେବା ଆଗରୁ ନିଜ ଦୋଷ ଦେଖ । ତୁ ନିଜେ ଆଗେ ସେମିତି ହୋଇଛୁ କି ? ଆଗେ ନିଜେ ଠିକ୍ ହୁଅ ତା'ପରେ ଅନ୍ୟକୁ ଠିକ୍ ହେବାକୁ ଅନୁରୋଧ କର । ସବୁ ଠିକ୍ ହୋଇଯିବ ।

ଅସିତ୍ ତୁ ଠିକ୍ କହିଛୁ, ତୁ ମୋ' ଆଖି ଖୋଲି ଦେଲୁ। ଆଚ୍ଛା ଦିନେଶ, ସତ କହିଲୁ ଏଇ ମନ୍ତ୍ର ଦେବାକୁ ତୁ ଆଉ ମୋତେ ଏଠିକି ଡକେଇ ନଥିଲୁ ତ । (ଅସିତ୍ ଓ ଦିନେଶ ହସିଲେ) (ଅସିତ୍‌କୁ ଛାଡ଼ିବାକୁ ଦିନେଶ, ଆକାଶ ବାହାରକୁ ଗଲେ)

ଅଞ୍ଜଳୀ ଝିଅ ରୋଷେଇ ଘରକୁ ଆସ ରାତି ହେଲାଣି । (ଅଞ୍ଜଳୀ ଭିତରକୁ ଗଲେ । ପିଲାମାନେ ସମସ୍ତେ ସମସ୍ତଙ୍କୁ ଅନେଇ ରହିଲେ ଆଖିରେ ଅନେକ ପ୍ରଶ୍ନବାଚୀ)

(ଅନ୍ଧାର)

## ଚତୁର୍ଥ ଦୃଶ୍ୟ

(ଡ୍ରଇଂ ରୁମ୍, ତା'ପର ଦିନ ସକାଳ । ସମସ୍ତେ ଯିବାକୁ ବାହାରିଛନ୍ତି। ବାହାରୁ ଗାଡ଼ିର ହର୍ଣ୍ଣ ଶୁଭିଲା ।)

ଦିନେଶ ଆରେ ଟ୍ୟାକ୍ସି ଆସିଲାଣି, ଶୀଘ୍ର ବାହାରି ପଡ଼ । (ଜଣେ ଜଣେ କରି ଆସିଲେ । ବାପା ମାଆଙ୍କ ପାଦ ଛୁଇଁଲେ ।)

ଅଞ୍ଜଳୀ (କାନ୍ଦି) ତୁମେ ସବୁ ନିତି ଫୋନ୍ କରିବ । ମଝିରେ ମଝିରେ ପିଲାମାନଙ୍କୁ ଧରି ଏଠିକି ଆସିବ ।

ଦିନେଶ ଏଠି ତ ଘର ବିକ୍ରି ହୋଇଯିବ ଏଠିକି ଆସିବେ କାହିଁକି ?

ଅଞ୍ଜଳୀ ଏଠିକି ନ ଆସିଲେ, ଆମେ ଯେଉଁଠି ରହିବୁ ସେଠିକି ଯିବେନି । ଗାଁରେ ରହିଲେ ଗାଁକୁ ଯିବେ ।

ପ୍ରକାଶ ବାପା ଆଉ ଥରେ ଚିନ୍ତା କରି ଦେଖନ୍ତୁ । ଏ ବୟସରେ ଗାଁରେ ରହିବେ, ଦେହପା' ଚିକିତ୍ସା ସବୁ କେମିତି ହେବ ?

ଦିନେଶ କାହିଁକି ଗାଁରେ କ'ଣ ମଣିଷ ରହୁ ନାହାଁନ୍ତି ? ତାଙ୍କ ଚିକିତ୍ସା ଯେମିତି ହେଉଛି, ଆମର ବି ସେମିତି ହେବ । ତା'ଛଡ଼ା ଏବେ ସବୁ ଗାଁକୁ ପକ୍କା ସଡ଼କ, ସବୁ ସବ୍‌ଡିଭିଜନରେ ହସ୍‌ପିଟାଲ ହେଲାଣି । ଗାଁ ଗାଁରେ ବ୍ୟାଙ୍କ, ବଜାର, ସହରର ସବୁ ଜିନିଷ ଏବେ ଗାଁରେ ମିଳୁଛି । ଅସୁବିଧା କ'ଣ ? ତୁମେ ଆଉ ମନା କରନି ।

ପ୍ରକାଶ ବାପା ମୋ ଲୋନ୍ କାଗଜଗୁଡ଼ା ଦିଅ ?

ବିକାଶ ମୋ' କାଗଜ ବି ?

ପ୍ରଣତି ମୋତେ କେତେ ଟଙ୍କା ଦେବାକୁ ହେବ କହିଲନି ତ ?

ଦିନେଶ କାହାକୁ କିଛି ଦେବାକୁ ପଡ଼ିବନି । ସବୁ ଲୋନ୍ ମୁଁ ଶୁଝି ଦେଇଛି । ଶୁଣ ବାବାମାନେ ପିଲାଙ୍କୁ ପାଳିବା ପୋଷିବା, ପାଠ ପଢ଼ାଇବା ବାପା ମାଆର ଦାୟିତ୍ୱ ଏବଂ କର୍ତ୍ତବ୍ୟ । ଆମେ ତାହା କରିଛୁ । ଆମ ସମୟ ଏବେ ସରିସରି ଆସିଲା । ଆଉ ତୁମ ସମୟ ଆରମ୍ଭ ହେଲା । ଏଣିକି ତୁମେ ଆମର ବାପା ମାଆ ଆଉ ଆମେ ତୁମର ପୁଅଝିଅ । ଆମ ସୁଖଦୁଃଖ ଆମ ଭବିଷ୍ୟତ ତୁମ ହାତରେ । ବାସ୍ ସେ କର୍ତ୍ତବ୍ୟ ତୁମେ କିମିତି ପାଳନ କରିବ ସେ ରାସ୍ତା, ସେ ଉପାୟ ତୁମକୁ ବାହାର କରିବାକୁ ପଡ଼ିବ । ଯେମିତି ଏବେ ମୋ' ବାର୍ଦ୍ଧକ୍ୟର ରାସ୍ତା ମୁଁ ବାହାର କରିନେଇଛି ।

ପ୍ରକାଶ କ'ଣ ସେ ରାସ୍ତା ?

ଦିନେଶ ଆଉ ଦିନେ କହିବି....ଗାଡ଼ି ସମୟ ହେଲାଣି। ଯାଅ... ହାପି ଜର୍ଣ୍ଣି। (ସମସ୍ତେ ଚାଲି ଯାଉଥିଲେ।) ଆକାଶ ଗାଁରେ ପହଞ୍ଚି ଫୋନ୍ କରିବୁ....(ସମସ୍ତେ ପ୍ରସ୍ଥାନ। ଦିନେଶ ବସିପଡ଼ିଲେ।) ଆଃ.... ଗୋଟିଏ ବଡ଼ ଟେନ୍‌ସନ୍ ଗଲା...।

ଅଞ୍ଜଳୀ କ'ଣ ହେଲା... ?

ଦିନେଶ ନାଇଁ କିଛି ନାହିଁ। ପାଣି ଗିଲାସେ ଦିଅ। (ଅଳ୍ପ ପାଣି ପିଇ ଗ୍ଲାସ ଫେରାଇ ଦେଲେ।)

ଅଞ୍ଜଳୀ ପୂରା ପିଇ ଦେଉନ....

ଦିନେଶ ବେଶୀ ପାଣି ପିଇବା ମନା....(ଗାଡ଼ିର ହର୍ଣ୍ଣ ଶୁଭିଲା। ପଶି ଆସିଲେ ପ୍ରଦୋଷ ଓ ଅସିତ।)

ଅସିତ ଆରେ ତୁ ତ ଗୋଟିଏ ମହାନ ଗାଲୁଆ ମଣିଷଟା। ଏତେ କଥା ମୋତେ ଲୁଚେଇଛୁ କେମିତି ?

ପ୍ରଦୋଷ ଛାଡ଼ନ୍ତୁ ସେ କଥା। (ଦିନେଶଙ୍କୁ) ଆପଣ ରେଡି ହୁଅନ୍ତୁ। ଘଣ୍ଟେ ଭିତରେ ଏୟାରପୋର୍ଟ ପହଞ୍ଚିବା। ମୁଁ ଟିକେଟ କରି ଆସିଛି।

ଦିନେଶ ଆରେ ଏତେ ବ୍ୟସ୍ତ କାହିଁକି ? ମୁଁ ଘରଟା ଆଗ ବିକ୍ରି କରି ସାରେ....ନହେଲେ ଏତେ ଟଙ୍କା ପାଇବି କେଉଁଠୁ ?

ପ୍ରଦୋଷ ସେ କଥା ଅସିତ ଅଙ୍କଲ ବୁଝିବେ... ମାଉସୀ ଆପଣ ବି ରେଡି ହୁଅନ୍ତୁ ଯିବା...

ଅଞ୍ଜଳୀ କୁଆଡ଼େ ? କାହିଁକି ?

ଦିନେଶ ଆରେ ତା'କୁ କାହିଁକି ନେବ ? ବିଚରା ସେଠି ଯାଇ ହଇରାଣ ହେବ ।

ଅଞ୍ଜଳୀ କୁଆଡ଼େ ଯିବ ? କାହିଁକି ଯିବ ? ଏ ପ୍ରଦୋଷ ମୋତେ ଟିକିଏ ଖୋଲି କୁହ ।

ପ୍ରଦୋଷ ମଉସା କ'ଣ ଆପଣଙ୍କୁ କିଛି କହିନାହାନ୍ତି ? ସେଥିପାଇଁ ମୁଁ ଫୋନ୍ କଲେ ଯାଡୁ ସ୍ୟାଡୁ କହି ଫୋନ କାଟି ଦେଉଛନ୍ତି । ପ୍ରକାଶ ଭାଇ, ବିକାଶ ଭାଇ କାହାଁନ୍ତି ? ପ୍ରଣତି କାହିଁ ? ସମସ୍ତଙ୍କୁ ଡାକନ୍ତୁ । ସମସ୍ତଙ୍କ ଆଗରେ କଥା ହେବା । ମୋର ଯାହା ବିଶ୍ୱାସ, ମଉସା ସେମାନଙ୍କୁ ବି କିଛି କହିନଥିବେ, ଲୁଚେଇଥିବେ ।

ଅଞ୍ଜଳୀ ଆରେ କଥା କ'ଣ କୁହ ?

ଅସିତ ଦିନେଶର ଦେହ ଅସୁସ୍ଥ । ପ୍ରଦୋଷ ଆସିଛି, ତାକୁ ଦିଲ୍ଲୀ ନେଇଯିବ ।

ଅଞ୍ଜଳୀ କ'ଣ କହୁଛ ?

ପ୍ରଦୋଷ ହଁ ମାଉସୀ । ମଉସାଙ୍କ କିଡ୍‌ନୀ ପ୍ରାୟ ଡେଡ୍ ହେବାକୁ ବସିଲାଣି । ମୁଁ ଗୋଟିଏ କିଡ୍‌ନୀ ଯୋଗାଡ଼ କରିଛି । ତୁରନ୍ତ କିଡ୍‌ନୀ ଟ୍ରାନ୍ସପ୍ଲାଣ୍ଟ କରିବାକୁ ପଡ଼ିବ ନ ହେଲେ...

ଅଞ୍ଜଳୀ ହେ ଭଗବାନ... (ଅଜ୍ଞାନ ହୋଇଗଲେ)

ପ୍ରଦୋଷ ତାଙ୍କ କଥା ମୁଁ ବୁଝୁଛି...ଆପଣ ପ୍ରସ୍ତୁତ ହୁଅନ୍ତୁ । (ଫୋନ୍ ଲଗାଇଲେ ଓ ପାଣି ଛାଟିଲେ । ଅଞ୍ଜଳୀର ହୋସ ଆସିଲା ।) ମାଉସୀ, ଧୈର୍ଯ୍ୟ ଧରନ୍ତୁ । ମୁଁ ଅଛି, ସବୁ ଠିକ୍ ହୋଇଯିବ... । (ଆମ୍ବୁଲାନ୍ସର ସାଇରନ ବାଜିଲା ।)

(ପରଦା ପଡ଼ିଲା)

## ପାତ୍ର ପରିଚୟ

| | |
|---|---|
| ଚାଣକ୍ୟ | ନବୀନ କୁମାର ପରିଡ଼ା |
| ଚାଣକ୍ୟ- ୨ | ଉପେନ୍ଦ୍ର ପତି |
| ସାରରଂବ | ଭକ୍ତି ରଞ୍ଜନ ଦାସ |
| ଶ୍ରୀକୃଷ୍ଣ | ଦେବବ୍ରତ ପଟ୍ଟନାୟକ |
| ଚନ୍ଦ୍ରଗୁପ୍ତ ଓ ନିରଞ୍ଜନ | ରାକେଶ ଶତପଥୀ |
| ଧୁରନ୍ଧର ଓ କୋରସ୍ | ଭକ୍ତି, ପବନା, କାଉ ଓ ଅନ୍ୟମାନେ |
| ବିଶାଳବାହୁ ଓ ରାକ୍ଷସ | ଚିରଞ୍ଜୀବ ବିଶ୍ୱାଳ |
| ଦ୍ରୌପଦୀ | ସୋନିକା ସାହୁ |
| ମାଳବିକା, ରାଣୀ | ସୁନନ୍ଦା ପରିଡ଼ା |
| ସୁହାସିନୀ | ମାମାଲି |
| ମଞ୍ଚସଜ୍ଜା | ପ୍ରଜ୍ଞାଦତ୍ତ ସାହୁ |
| ଆଲୋକ | ସଞ୍ଜୟ |
| ସଙ୍ଗୀତ | ଶକ୍ତି ପ୍ରସାଦ ମିଶ୍ର |
| ନିର୍ଦ୍ଦେଶନା | ନବୀନ କୁମାର ପରିଡ଼ା |
| ପ୍ରଥମ ପରିବେଷଣ | ରବୀନ୍ଦ୍ର ମଣ୍ଡପ, ଭୁବନେଶ୍ୱର |
| ଦ୍ୱିତୀୟ ପରିବେଷଣ | ନାଟ୍ୟଧାରା, ଭଞ୍ଜ କଳା ମଣ୍ଡପ |
| ପ୍ରଯୋଜନା | ନବୀନ ବର୍ଣ୍ଣାଳୀ, ଭୁବନେଶ୍ୱର |

# ପ୍ରଥମ ଦୃଶ୍ୟ

(ପ୍ରବେଶ କଲେ ଚାଣକ୍ୟ।)

ଚାଣକ୍ୟ ବୋଧହୁଏ ଏଇ ସେଇ ସ୍ଥାନ। ନନ୍ଦବଂଶ ଧ୍ୱଂସ କରି, ଅଖଣ୍ଡ ଭାରତର ସ୍ଥାପନା କରି, ମୌର୍ଯ୍ୟବଂଶର ପ୍ରଥମ ସମ୍ରାଟ ଚନ୍ଦ୍ରଗୁପ୍ତଙ୍କ ପରି ପ୍ରଜାବତ୍ସଳ ରାଜାଙ୍କ ହାତରେ ଶାସନରେ ଗୁରୁଭାର ନ୍ୟସ୍ତ କରି ସାରିବା ପରେ, ମୁଁ ବାନପ୍ରସ୍ଥ ସାଧନା ନିମନ୍ତେ ଆଶ୍ରମ ପ୍ରତିଷ୍ଠା କରିଥିଲି। ନିକାଞ୍ଚନ ବନଲତା ଘେରା ଏଇ ଘଞ୍ଚ ଜଙ୍ଗଲ ଭିତରେ ମୁଁ ମୁକ୍ତି କାମନା କରି ସମାଧିସ୍ଥ ହୋଇଯାଇଥିଲି। ମୋର ମର ଶରୀରକୁ ହୁଏତ ଏଇଠି କେଉଁଠି ମାଟିର ସ୍ତୂପ ଭିତରେ ସମାଧିସ୍ଥ କରାଇ ମୋର ଶିଷ୍ୟମାନେ ଲୋକାଳୟକୁ ଫେରିଯାଇଥିବେ। ସେଦିନର ସେଇ ଆଶ୍ରମର ଚିହ୍ନବର୍ଣ୍ଣ ବି ହୁଏତ କେବେ ଠାରୁ ଲୋପ ପାଇ ସାରିଲାଣି। ତଥାପି କାହିଁକି କେଜାଣି ମୁଁ ଏବେ ଅନୁଭବ କରୁଛି ଏକ ଭିନ୍ନ ଆବେଦନର ସ୍ୱର। ମୋର ଅନ୍ତରାତ୍ମା ଯେମିତି ମୋତେ ଭିନ୍ନ କେଉଁ ଆହ୍ୱାନର ସମ୍ମୁଖୀନ ହେବାକୁ ପ୍ରବର୍ତ୍ତାଉ ଅଛି। ମୁକ୍ତିର ଦ୍ୱାରଦେଶରେ ପହଞ୍ଚି ସାରି ମୁଁ ଯେପରି ସେଇ ଜନ୍ମମୃତ୍ୟୁର ଲକ୍ଷ୍ମଣରେଖା ଡେଇଁଯିବାକୁ ଚାହେଁନା। ମୁକ୍ତିର ଆନନ୍ଦ ଯେମିତି ମୋତେ ଆଜି ରୋମାଞ୍ଚିତ କରିପାରୁନି। ମୋର ଆତ୍ମା ଯେମିତି ପୁଣି ଥରେ ଜନ୍ମମୃତ୍ୟୁର ଲୁଚକାଳି ଖେଳ ଖେଳିବାକୁ ଚାହେଁ। କିନ୍ତୁ କାହିଁକି ? କାହିଁକି ମୋ ଅନ୍ତରାତ୍ମାରେ ଏ ତୀବ୍ର ଜ୍ୱଳନ ମୋତେ ଅସ୍ଥିର କରୁଛି ? କିଏ ଦେବ ତା'ର ଉତ୍ତର ? (ଦୂରରେ କାହାର ପାଦଧ୍ୱନି ଶୁଣାଗଲା) କିଏ ? କିଏ ସେଠି ?

ସାରଂରବ ମୁଁ ଗୁରୁଦେବ ! ସାରଂରବ !

ଚାଣକ୍ୟ ତୁମେ ତା'ହେଲେ କ'ଣ ଏପର୍ଯ୍ୟନ୍ତ ଜନପଦକୁ ଫେରିଯାଇନାହଁ ? ତୁମେ ମୋ ଆଜ୍ଞା ପାଳନ କରିନ କାହିଁକ ?

ସାରଂରବ ଆପଣଙ୍କ ଆଜ୍ଞା ପାଳନ କରି, ଆପଣଙ୍କ ପାର୍ଥିବ ଶରୀରକୁ ସମାଧିସ୍ଥ କରି, ତା'କୁ ପ୍ରଣାମ ଜଣାଇ ଆମେ ସମସ୍ତେ ଯେ ଯାହାର ଗୃହସ୍ଥାଶ୍ରମକୁ ଫେରି ଯାଇଥିଲୁ ଗୁରୁଦେବ ! କିନ୍ତୁ .... ପୁଣି ଏଠାକୁ ମୁଁ ଫେରି ଆସିବାକୁ ବାଧ ହେଲି।

ଚାଣକ୍ୟ ମୃତ୍ୟୁ ପୂର୍ବରୁ ?

ସାରଂରବ ନା, ଗୁରୁଦେବ, ମୃତ୍ୟୁ ପରେ।

ଚାଣକ୍ୟ କାହିଁକି ?

ସାରଂରବ ଜନପଦ ମୋତେ ଶାନ୍ତି ଦେଇପାରିଲା ନାହିଁ। ତେଣୁ ପ୍ରକୃତି କୋଳକୁ ଫେରି ଆସିବାକୁ ଚାହିଁଲି।

ଚାଣକ୍ୟ ମାତ୍ର ଏଇ ସ୍ଥାନକୁ କାହିଁକି ଫେରି ଆସିବାକୁ ଚାହିଁଲ ବତ୍ସ ?

ସାରଂରବ ଫେରିବାର କାରଣ ତ ଅନେକ। ତେବେ ଜନପଦର କାର୍ଯ୍ୟପ୍ରଣାଳୀ ମଧ୍ୟରେ ମୁଁ ନିଜକୁ ଅସୁରକ୍ଷିତ ମନେକଲି।

ଚାଣକ୍ୟ ଆଶ୍ଚର୍ଯ୍ୟ ! ଜନପଦରେ ନିଜକୁ ଅସୁରକ୍ଷିତ ମଣିବାର କାରଣ ?

ସାରଂରବ ବଞ୍ଚିବା ପାଇଁ ନିରନ୍ତର ସେଠି ପ୍ରତିଯୋଗିତା।

ଚାଣକ୍ୟ କିନ୍ତୁ ପ୍ରତିଯୋଗିତା ତ ପରିପୁଷ୍ଟ କରିବାର ମାଧ୍ୟମ। ଏଥିରେ ଅସ୍ୱାଭାବିକତା ରହିଲା କେଉଁଠି ? ଜନପଦ ହେଉ କିମ୍ବା ପ୍ରକୃତି, ସବୁଠି ଅନବରତ ପ୍ରତିଯୋଗିତା ନିରନ୍ତର ଚାଲିଛି। ଚତୁର୍ଦ୍ଦିଗକୁ ଅନୁଶୀଳନ କଲେ ଜାଣିପାରିବ। ଆକାଶକୁ ଛୁଇଁବା ପାଇଁ ଏଠି ଦ୍ରୁମ ମହାଦ୍ରୁମମାନଙ୍କ ମଧ୍ୟରେ ନିରବଚ୍ଛିନ୍ନ ନିରବ ପ୍ରତିଯୋଗିତା। ଏଠି ମଧ୍ୟ ଜୀବନ ବଞ୍ଚିବା ଓ ବଞ୍ଚାଇବା ପାଇଁ ଖାଦ୍ୟ ଖାଦକ ମଧ୍ୟରେ ନିରନ୍ତର ସଂଘର୍ଷ ଓ ପ୍ରତିଯୋଗିତା କରିବାକୁ ପଡ଼େ।

ସାରଂରବ ସେଠାକାର ପ୍ରତିଯୋଗିତା କିନ୍ତୁ ଖାଦ୍ୟ ଖାଦକର ନୁହେଁ ଗୁରୁଦେବ। ପ୍ରଭୁତ୍ୱ, ଅହଙ୍କାର, କାମନା, ବାସନାର ନୃଶଂସ ଖେଳ, ରକ୍ତପାତ ଆଉ ବର୍ବରତାରେ ରୂପାନ୍ତରିତ ହୁଏ। ଅଥଚ ଏଠାକାର ପ୍ରତିଯୋଗୀମାନଙ୍କୁ ପଶୁ କୁହାଯାଏ। ଆଉ ସେଠାକାର ପ୍ରତିଯୋଗୀମାନଙ୍କୁ ମଣିଷ।

ଚାଣକ୍ୟ ମଣିଷର ପ୍ରଥମ ପରିଚୟ କ'ଣ ଜାଣ ?

ସାରଂରବ ଜାଣେ।

ଚାଣକ୍ୟ ତେଣୁ ପଶୁତ୍ୱର ବ୍ୟବହାର ତା' ପାଇଁ ଅସ୍ୱାଭାବିକ ନୁହେଁ।

ସାରଂରବ ଏକାନ୍ତ ଅପରିହାର୍ଯ୍ୟ ମଧ୍ୟ ନୁହେଁ ?

ଚାଣକ୍ୟ ଅବଶ୍ୟ ସତ, ମାତ୍ର ସେଥିରୁ ମୁକ୍ତି ପାଇବା ପାଇଁ ତା'କୁ ପ୍ରୟାସ କରିବାକୁ ପଡ଼େ। ନିଜକୁ ଶିକ୍ଷିତ ଓ ପରିମାର୍ଜିତ କରିବାକୁ ପଡେ, ଯାହା ଏକ ନିରନ୍ତର ସାଧନା ବ୍ୟତୀତ ଅନ୍ୟ କିଛି ନୁହେଁ। ଭୋଗ ଆଉ ତ୍ୟାଗ ଭିତରେ ମନ ଆଉ ବିବେକର ସଂଘର୍ଷରୁ ନିଜକୁ ମୁକ୍ତ କରି ସଂଯମତା ଆଚରଣ କରିବାକୁ ପଡ଼େ, ଯାହା ଅତ୍ୟନ୍ତ କଠିନ କାର୍ଯ୍ୟ। ମାତ୍ର ତୁମ ଭଳି ଜଣେ ସାଧକ ନିମନ୍ତେ ଅସ୍ୱାଭାବିକତା କ୍ଷମଣୀୟ ନୁହେଁ।

ସାରଂରବ ମୋର ଅସ୍ୱାଭାବିକତା କ'ଣ ଗୁରୁଦେବ ?

ଚାଣକ୍ୟ କ୍ଷେତ୍ର ଛାଡ଼ି ପଳାୟନ କରିବା ଅସ୍ୱାଭାବିକତା ନୁହେଁ ତ ଆଉ କ'ଣ ?

ସାରଂରବ ତା'ହେଲେ ସେଠାରେ ରହି ଅନ୍ୟମାନଙ୍କ ପରି ମୁଁ ମଧ୍ୟ କ'ଣ ପାଶବିକ ଆଚରଣ କରିବାକୁ ବାଧ୍ୟ ହୋଇଥାନ୍ତି ?

ଚାଣକ୍ୟ ନା ! ବରଂ ତୁମେ ସେଇଠାରେ ରହି ଅନ୍ୟମାନଙ୍କୁ ପାଶବିକ ହେବାର ପ୍ରୟାସରୁ ନିବୃତ୍ତ କରିବାର ପ୍ରୟାସ କରିପାରିଥାନ୍ତ। ଶୋଷିତମାନଙ୍କୁ ଶୋଷଣମୁକ୍ତ କରିବାର ପ୍ରୟାସ କରିପାରିଥାନ୍ତ। ସେମାନଙ୍କୁ ନ୍ୟାୟୋଚିତ ଏକ ପରିବେଶ ଦେବାର ପ୍ରଚେଷ୍ଟା କରିପାରିଥାନ୍ତ। ମୁଁ ଖୁବ୍ ଖୁସି ହୋଇଥାନ୍ତି।

ସାରଂରବ ମୁଁ ତ କେବଳ ଆପଣଙ୍କୁ ଅନୁସରଣ କରିବାର ପ୍ରୟାସରେ ଏଠାକୁ ଆସିଛି ମାତ୍ର।

ଚାଣକ୍ୟ ତୁମେ କ'ଣ ଇଙ୍ଗିତ କରିବାକୁ ଚାହଁ ଯେ ମୁଁ କାହିଁକି ଅମାତ୍ୟ ପଦ ଛାଡ଼ି ବାନପ୍ରସ୍ଥ ପାଇଁ ବନଗମନ କଲି ?

ସାରଂରବ ନା, ଗୁରୁଦେବ, ଆପଣଙ୍କୁ ଇଙ୍ଗିତ କରିବାର ଦୁଃସାହସ କରି ମୁଁ ନର୍କଗାମୀ ହେବାକୁ ଚାହେଁନା।

ଚାଣକ୍ୟ ତଥାପି ତୁମର ଜାଣିରଖିବା ଉଚିତ ଯେ ମୁଁ ମୋର ସମସ୍ତ ଜୀବନ ଯୌବନକୁ ରାଷ୍ଟ୍ର ହିତ, ରାଷ୍ଟ୍ର

ନିର୍ମାଣ ଆଉ ପ୍ରଜାମାନଙ୍କର ମଙ୍ଗଳ କର୍ମ ଲାଗି ବିନିଯୋଗ କରି, ଲକ୍ଷ୍ୟପ୍ରାପ୍ତି ପରେ, ଉପଯୁକ୍ତ ପାତ୍ର ହସ୍ତରେ ରାଜ୍ୟ ଭାର ଅର୍ପଣ କରି ନିଶ୍ଚିନ୍ତ ମନରେ ବନଗମନ କରିଥିଲି। ମାତ୍ର ତୁମେ...

ସାରଂରବ ଗୁରୁଦେବଙ୍କୁ ଅନୁସରଣ କରିବାର ଅର୍ଥ ଗୁରୁଦେବଙ୍କର ପଦବନ୍ଦନା କରିବା। ଗୁରୁଦେବ ମୋତେ ପଥ ପ୍ରଦର୍ଶନ କଲେ ଧନ୍ୟ ହେବି। କୁହନ୍ତୁ, ମୋର କର୍ତ୍ତବ୍ୟ କ'ଣ ? ମୋ ପାଇଁ ଆପଣଙ୍କର ଆଦେଶ କ'ଣ ? (ଦୂରରୁ ନାରୀର କଣ୍ଠ ସ୍ୱର ଶୁଣାଗଲା)

ଚାଣକ୍ୟ ଦୂରରୁ ନାରୀର କଣ୍ଠ ସ୍ୱର ଶୁଣାଯାଉଛି। ହୁଏତ ଏଇ ଜଙ୍ଗଲ ମଧ୍ୟରେ କିଏ ଜଣେ ନାରୀ ବିପଦରେ ପଡ଼ିଛି। ଯାଇ ଦେଖି ଆସ ବତ୍ସ ! (ପୁଣି ହସ ଶୁଭିଲା)

ସାରଂରବ ଗୁରୁଦେବ ! ଏ ଯେ ନାରୀର ଦୀର୍ଘ ହସର ସ୍ୱର। ବିପଦରେ ପଡ଼ି କିଏ କେବେ ଏମିତି ହସିବ କାହିଁକି ?

ଚାଣକ୍ୟ କିନ୍ତୁ ଅନୁସନ୍ଧାନ କରିବା ଆମର କର୍ତ୍ତବ୍ୟ।

ଦ୍ରୌପଦୀ (ପ୍ରବେଶୀ) ଅନୁସନ୍ଧାନର ଆବଶ୍ୟକତା ନାହିଁ। କାରଣ, ମୁଁ ତ ଆପଣଙ୍କୁ ଅନୁସରଣ କରି ଏଠାକୁ ଆସିଛି।

ଚାଣକ୍ୟ ମୋତେ ଅନୁସରଣ କରିବାର କାରଣ ?

ଦ୍ରୌପଦୀ ଅବଶ୍ୟ କହିବି। ମାତ୍ର ତା' ପୂର୍ବରୁ ଆପଣଙ୍କର ପରିଚୟ ଜାଣିବାର ଅଧିକାର କ'ଣ ମୋର ନାହିଁ ?

ଚାଣକ୍ୟ ଆଶ୍ଚର୍ଯ୍ୟ ! ପରିଚୟ ଜାଣିନ, ଅଥଚ ଅନୁସରଣ କରୁଛ ? ଏ ତ ଅସମ୍ଭବ।

ଦ୍ରୌପଦୀ ତଥାପି ଆପଣଙ୍କ ମୁଖରୁ ନିଜର ପରିଚୟ ଶୁଣି ମୋର ଆଶଙ୍କାକୁ ଦୃଢ଼ୀଭୂତ କରିନେବାକୁ ଚାହେଁ।

ସାରଂରବ ଏ ଆର୍ଯ୍ୟାବର୍ତ୍ତରେ ଏମିତି କେହି ବ୍ୟକ୍ତି ଅଛନ୍ତି ଯେ କି ଆମ ଗୁରୁଦେବଙ୍କର ପରିଚୟ ଜାଣିନାହାନ୍ତି ? ଏ ତ ଅସମ୍ଭବ।

ଚାଣକ୍ୟ ସ୍ଥିର ହୁଅ ବତ୍ସ ! ଏ ଅଧମ, ଆଚାର୍ଯ୍ୟ ଚଣକଙ୍କ ପୁତ୍ର।

ଦ୍ରୌପଦୀ ଚାଣକ୍ୟ, ବିଷ୍ଣୁ ଗୁପ୍ତ-। ପୁଣି କେହି କେହି ତାଙ୍କୁ କୌଟିଲ୍ୟ ବୋଲି ଜାଣିଛନ୍ତି।

ଚାଣକ୍ୟ ସମ୍ପୂର୍ଣ୍ଣ ପରିଚୟ ତ ଆପଣଙ୍କର ଜ୍ଞାତ ଅଛି ମାତା ! ତଥାପି ପ୍ରଶ୍ନ କରିବାର କାରଣ ?

ଦ୍ରୌପଦୀ ଏ ପରିଚୟ ବ୍ୟତିରେକେ ଆଉ ଯଦି କିଛି ପରିଚୟ ଥାଏ ? ଯେମିତି....କୁଶତୃଣ ମୂଳରେ ଦଧିଶର୍କରା ପକାଇ ତାକୁ ସମୂଳେ ଧ୍ୱଂସ କରିବାର ଅଭିପ୍ରାୟ ରଖିଥିବା ସେଇ ବ୍ୟକ୍ତିଜଣକ କ'ଣ ଆପଣ ନିଜେ ନା ଅନ୍ୟ କେହି ? ନନ୍ଦବଂଶକୁ ନିଜର କୂଟନୀତି ବଳରେ ଧ୍ୱଂସ କରି ମୌର୍ଯ୍ୟବଂଶର ସ୍ଥାପନ କରି ଅଖଣ୍ଡ ଭାରତର ନିର୍ମାଣ କରିଥିବା ବ୍ୟକ୍ତିଜଣକ କ'ଣ ଆପଣ ନିଜେ ନା ଅନ୍ୟ କେହି ?

ଚାଣକ୍ୟ ଓ.... ! ପରିଚୟ ଛଳରେ ଶବ୍ଦର ବକ୍ରୋକ୍ତି ପ୍ରୟୋଗ କରି ମୋତେ ପରିହାସ କରିବାକୁ ଚାହୁଁଥିବା ମାତାଙ୍କର ପରିଚୟ ଜାଣିପାରେ କି ?

ଦ୍ରୌପଦୀ ବିନା କାରଣରେ ପରିହାସ ବା କଟୂକ୍ତି କରି କାହାକୁ ଆହତ କରିବା ଯାଜ୍ଞସେନୀର ଜନ୍ମଯାତକରେ ଲେଖା ନାହିଁ ଆଚାର୍ଯ୍ୟ।

ଚାଣକ୍ୟ ଅହୋଭାଗ୍ୟ ମୋର....ଯାଦବ ପତି ଶ୍ରୀକୃଷ୍ଣଙ୍କର ପ୍ରିୟ ସଖୀ କୃଷ୍ଣାଙ୍କୁ ମୋର ପ୍ରଣାମ। ବତ୍ସ ! ଦେବୀଙ୍କ ଲାଗି କୁଶାସନ ଓ ଫଳମୂଳର ବ୍ୟବସ୍ଥା କର। (ସାରରଂବ ପ୍ରସ୍ଥାନ) ଏଥର କୁହନ୍ତ ମୋତେ ଅନୁସରଣ କରି ଏଠାକୁ ଆସିବାର କାରଣ କ'ଣ ?

ଦ୍ରୌପଦୀ ସେ କଥା ପରେ, ଆଗେ କୁହନ୍ତୁ, କିଏ କାହାକୁ ଅଭ୍ୟର୍ଥନା କରିବା ଉଚିତ ଆଚାର୍ଯ୍ୟ ? ଗୃହସ୍ଥର ସନ୍ନ୍ୟାସୀକୁ ନା ସନ୍ନ୍ୟାସୀର ଗୃହସ୍ଥକୁ ?

ଚାଣକ୍ୟ "ଅତିଥି ଦେବୋଭବଃ।" ଏହା ହିଁ ଆର୍ଯ୍ୟାବର୍ତ୍ତର ସଂସ୍କୃତି।

ଦ୍ରୌପଦୀ କିଏ ଅତିଥି ? ମୁଁ ନା ଆପଣ ?

ଚାଣକ୍ୟ ଏହା ଯେ ମୋର ଆଶ୍ରମର କ୍ଷେତ୍ର। ସେ ଦୃଷ୍ଟିରୁ ମୁଁ ଏଠାକାର ତପୋବନ ଅଧିବାସୀ...ଅତଏବ...

ଦ୍ରୌପଦୀ ମୁଁ ଏ ମାଟିର କନ୍ୟା, ବଧୂ ପୁଣି ମାତା । ଏଣୁ ଅତିଥି ଚର୍ଚ୍ଚାରେ ମୋର ଅଗ୍ରାଧିକାର ରହିଛି ।

ଚାଣକ୍ୟ ତଥାସ୍ତୁ ! ମାତାଙ୍କର ଇଚ୍ଛା ପରିପୂର୍ଣ୍ଣ ହେଉ । ମୁଁ ଆପଣଙ୍କର ଆତିଥ୍ୟ ଗ୍ରହଣ କରିବାକୁ ପ୍ରସ୍ତୁତ ।

ଦ୍ରୌପଦୀ (ପଣତ ଚିରି ଦେଲେ) ।

ଚାଣକ୍ୟ ଏ କ'ଣ କରୁଛନ୍ତି ମାତା !

ଦ୍ରୌପଦୀ ଆପଣଙ୍କ ନିମନ୍ତେ ଆସନ ପ୍ରସ୍ତୁତ କରୁଛି । ଏଥର ଉପବେଶନ କରନ୍ତୁ । ଆଉ ଗ୍ରହଣ କରନ୍ତୁ ଏଇ ପତ୍ରରେ ଥିବା ଶାକାନ୍ନର କେତୋଟି କଣିକା ମାତ୍ର ।

ଚାଣକ୍ୟ ବାଃ...ଚମତ୍କାର ଆପଣଙ୍କର ଆତିଥ୍ୟର ଚାତୁରୀ । ଆତିଥ୍ୟ ପ୍ରଦାନ କରି ଆପଣ ମୋତେ ଋଣୀ କରିଦେବାକୁ ଚାହାଁନ୍ତି ? (ବସିଲେ ଓ ଖାଇଲେ) ଏଥର କହନ୍ତୁ ଏ ଋଣ ପରିଶୋଧ କରିବାର ଉପାୟ ?

ଦ୍ରୌପଦୀ ଆତିଥ୍ୟ ପ୍ରଦାନ କରି ମୁଁ ମୋର କର୍ତ୍ତବ୍ୟ କରିଛି ମାତ୍ର । ଅତିଥିଙ୍କୁ ଋଣଗ୍ରସ୍ତ କରିବା ଗୃହସ୍ଥର ଧର୍ମ ନୁହେଁ କି ଉଦ୍ଦେଶ୍ୟ ମଧ୍ୟ ନୁହେଁ ।

ଚାଣକ୍ୟ ଉଚିତ କହିଛନ୍ତି ମାତା । ଗୃହସ୍ଥର ଧର୍ମ ଭଳି ସନ୍ନ୍ୟାସୀର ଧର୍ମ ମଧ୍ୟ ଏ ସନ୍ନ୍ୟାସୀକୁ ପାଳନ କରିବାକୁ ଦିଅନ୍ତୁ ମାତା। ମୁଁ ଜାଣେ, ତୁମ ଏଇ ପଣତକାନିରୁ ଖଣ୍ଡେ ନିଜ ଆଙ୍ଗୁଳିରେ ଦିନେ ଜଣେ ବାନ୍ଧିଥିଲେ ବୋଲି ତା'ଙ୍କୁ ଶତବସ୍ତ୍ର ଦେଇ ଆଉ ଦିନେ ଋଣ ପରିଶୋଧ କରିବାକୁ ପଡ଼ିଥିଲା। ତୁମ ଅକ୍ଷୟ ପାତ୍ରରୁ କାଣିଚାଏ ଶାକାନ୍ନ ଖାଇଥିଲେ ବୋଲି ଜଣଙ୍କୁ ଦୁର୍ବାସାଙ୍କର ସହସ୍ର ଶିଷ୍ୟଙ୍କୁ କ୍ଷୁଧାମୁକ୍ତ କରିବାକୁ ପଡ଼ିଥିଲା। କିନ୍ତୁ ମୁଁ ତ ସେମିତି ଜଣେ କରିତ୍‌କର୍ମା କିମ୍ୱା ଲୀଳାମୟ ପୁରୁଷ ନୁହେଁ ମାତା। ମୋତେ ବା କାହିଁକି ଏଭଳି ଆତିଥ୍ୟ ପ୍ରଦାନ କଲେ ?

ଦ୍ରୌପଦୀ ବିଶ୍ୱାସ କରନ୍ତୁ, ବାସୁଦେବ ଶ୍ରୀକୃଷ୍ଣଙ୍କର ସେବା କଲାବେଳେ ମୋ ମନରେ ଏଭଳି ପ୍ରତ୍ୟାଶା କେବେ ବି ଉଙ୍କି ମାରିନଥିଲା। ଭବିଷ୍ୟତ ଦ୍ରଷ୍ଟା ବାସୁଦେବଙ୍କର ମହନୀୟତାର ପ୍ରତିଦାନ ସ୍ୱରୂପ ସେ ବାରମ୍ବାର ମୋତେ ଆଉ ପାଣ୍ଡବମାନଙ୍କୁ ସହାୟତା କରିବାକୁ ଆଗେଇ ଆସିଥିଲେ। ସମସ୍ତେ ସେମିତି ପାରିବେ ନାହିଁ, ମୁଁ ଜାଣେ।

ଚାଣକ୍ୟ ଫଳର ଆଶା ନ ରଖି କର୍ମ କରିବାରେ ସମସ୍ତଙ୍କର ସମାନ ଅଧିକାର ଅଛି। ବିନା ପ୍ରଚେଷ୍ଟାରେ କର୍ମ ନିବୃତ୍ତ ହେବା ମୋର ମଧ୍ୟ ଧର୍ମ ନୁହେଁ। ନିଃସଙ୍କୋଚରେ ବ୍ୟକ୍ତ କରନ୍ତୁ, କ'ଣ ଆପଣଙ୍କର ଇଚ୍ଛା। ମୁଁ ଆପଣଙ୍କର କ'ଣ ସେବା କରିପାରେ ?

ଦ୍ରୌପଦୀ ବୋଧହୁଏ ଆପଣ ଯେଉଁଥିପାଇଁ ଏଠାକୁ ଆସିଛନ୍ତି ମୋ ଆସିବାର ଅଭିପ୍ରାୟ ମଧ୍ୟ ଠିକ୍ ସେଇଆ। ମାତ୍ର....ଛାଡ଼ନ୍ତୁ ସେ କଥା।

ଚାଣକ୍ୟ	ନିଶ୍ଚିତ କାରଣ କିଛି ଜାଣେ ନାହିଁ, ତଥାପି କହିପାରନ୍ତି ଯେ ଅନ୍ତରାତ୍ମାର ଆହ୍ୱାନରେ ମୋର ପ୍ରତିଷ୍ଠିତ ଅଖଣ୍ଡ ଭାରତକୁ ପୁଣି ଥରେ ପରିକ୍ରମା କରିବାକୁ ଚାହେଁ।

ଦ୍ରୌପଦୀ	(ହସିଲେ) ମୁଁ ଯଦି କହେଁ, ଏ ପରିକ୍ରମା କେବଳ ଏକ ବାହାନା ମାତ୍ର।

ଚାଣକ୍ୟ	ଆଚ୍ଛା, ତା'ହେଲେ ସତ୍ୟାସତ୍ୟ ମଧ୍ୟ ଆପଣଙ୍କୁ ଜଣାଥିବ ନିଶ୍ଚୟ। ଅବିଳମ୍ବେ ତାହା ଘୋଷଣା କରନ୍ତୁ। ମୁଁ ବି ତା'ର ରୂପରେଖକୁ ମୋର କଳ୍ପନାର ଚକ୍ଷୁରେ ଥରେ ଆଙ୍କି ନେଇଦେଖେ।

ଦ୍ରୌପଦୀ	ସ୍ୱୀକାର କରନ୍ତୁ ବା ନ କରନ୍ତୁ, କିନ୍ତୁ ମୁଁ ଜାଣେ ଯେ ଜନ୍ମଭୂମିର ପରିକ୍ରମା ମାଧ୍ୟମରେ ନିଜ ପ୍ରତିଷ୍ଠିତ ଅହଙ୍କାରର ପରିପୂର୍ଣ୍ଣ ସ୍ୱରୂପ ଦର୍ଶନ କରି ପୁଣି ଥରେ ନିଜେ ଆତ୍ମାଭିଭୂତ ହେବାକୁ ଚାହାଁନ୍ତି। ନିଜର ପ୍ରତିଷ୍ଠିତ ଅହଙ୍କାରକୁ ଆହୁରି ଉତ୍‌ଫୁଲ୍ଲିତ କରିବାକୁ ଚାହାନ୍ତି।

ଚାଣକ୍ୟ	ମାତା! ଆପଣ କ'ଣ ସତରେ ମୋତେ ଧିକ୍କାର କରିବାକୁ ଚାହାଁନ୍ତି? ଆପଣ କ'ଣ ଜାଣନ୍ତି ନାହିଁ ଯେ ମୁଁ ମୋର ବୁଦ୍ଧି ଆଉ କର୍ମ ବଳରେ ଅପରାଜେୟ ପ୍ରବଳ ପ୍ରତାପୀ ନନ୍ଦବଂଶକୁ ଧ୍ୱଂସ କରି ମୌର୍ଯ୍ୟବଂଶର ସ୍ଥାପନା କରିଥିଲି ବୋଲି?

ଦ୍ରୌପଦୀ	ଜାଣେ।

ଚାଣକ୍ୟ	ମୁଁ କ'ଣ ତା'ହେଲେ କିଛି ଭୁଲ୍ କରିଥିଲି?

ଦ୍ରୌପଦୀ	ଭୁଲ୍ ଠିକ୍ ଆପଣ ଜାଣନ୍ତି। ମୋର ପ୍ରଶ୍ନ ଆପଣ ନନ୍ଦବଂଶ ଧ୍ୱଂସ କରିଥିଲେ କାହିଁକି?

ଚାଣକ୍ୟ	କି ଅବାନ୍ତର ପ୍ରଶ୍ନ? ଅନ୍ୟାୟକୁ ପ୍ରତିରୋଧ କରିବା ପ୍ରତ୍ୟେକ ମଣିଷର କର୍ମ ଆଉ ଧର୍ମ ମଧ୍ୟ।

ଦ୍ରୌପଦୀ	କେବଳ ସେଥିପାଇଁ ନା ନିଜର ଅପମାନର ପ୍ରତିଶୋଧ ନେବା ପାଇଁ?

ଚାଣକ୍ୟ	ହୁଏତ ବା ହୋଇଥାଇପାରେ। କିନ୍ତୁ ସେ ଦୁଇଟି କଥା ତ ଗୋଟିଏ ମୁଦ୍ରାର ଦୁଇ ପାର୍ଶ୍ୱ ଭଳି ନୁହେଁ କି? ସେଥିରେ ଅନ୍ୟାୟ ରହିଲା କେଉଁଠି?

ଦ୍ରୌପଦୀ	ମୁଁ ଯଦି କହେଁ ଯେ ଗୋଟିଏ ଅନ୍ୟାୟକୁ ପ୍ରତିରୋଧ କରି ଅନ୍ୟ ଅନେକ ଅନ୍ୟାୟକୁ ପ୍ରଶ୍ରୟ ଦେଇଛନ୍ତି ଆପଣ?

ଚାଣକ୍ୟ	ଅସମ୍ଭବ। ମୁଁ ଜଣେ ଉପଯୁକ୍ତ ଅଧିକାରୀ ନିର୍ମାଣ କରି ତାରି ହାତରେ ଶାସନ ଭାର ଅର୍ପଣ କରିଛି। ତା'ର ଚରିତ୍ର ତା'ର କର୍ମ ଓ ଧର୍ମ ଉପରେ ମୋର ଅଖଣ୍ଡ ବିଶ୍ୱାସ ରହିଛି। ଆଜି ବି ସେଦିନ କଥା ମୋର ମନେଅଛି। ଯେଉଁଦିନ ମହାମନ୍ତ୍ରୀ ଭାବେ ଅମାତ୍ୟ ରାକ୍ଷସଙ୍କ ହସ୍ତରେ ଶାସନ ଭାର ଅର୍ପଣ କରି ମୌର୍ଯ୍ୟ ବଂଶର ସିଂହାସନ ତଥା ଶାସନକୁ କଣ୍ଟକଶୂନ୍ୟ, ଦୁର୍ନୀତିମୁକ୍ତ ଏବଂ ପ୍ରଜାଧର୍ମୀ କରି ଗଢ଼ି ତୋଳିବାର ଅଙ୍ଗୀକାର କରି ମୁଁ ପରମ ଆନନ୍ଦ ଆଉ ଆତ୍ମତୃପ୍ତି ନେଇ ଜଙ୍ଗଲର ଏହି ସ୍ଥାନକୁ ଆସି ମୋର ବାନପ୍ରସ୍ଥ ଧର୍ମ ଆଚରଣ କରିଥିଲି।

ଦ୍ରୌପଦୀ	ସେଇ ଆତ୍ମତୃପ୍ତିକୁ ଆଉ ଥରେ ସ୍ୱଚକ୍ଷୁରେ ଦେଖି ନିଜର ଅହମିକାକୁ ଦ୍ୱିଗୁଣିତ କରିବାକୁ ଆପଣଙ୍କର ଆଜିର ଏ ପରିକ୍ରମା।

ଚାଣକ୍ୟ	ଆଖିରେ ନ ଦେଖିଲେ ସେଦିନର କଥା, କଥାରେ କହି ବୁଝାଇବା ସମ୍ଭବ ନୁହେଁ। ଚାଲନ୍ତୁ, ଅତତୀକୁ ପୁଣି ଥରେ ଦେଖିନେବା, ତା'ପରେ ଆପଣଙ୍କ ପ୍ରଶ୍ନର ଉତ୍ତର ଆପଣ ହୁଏତ ପାଇ ଯାଇପାରିବେ।

| | |
|---|---|
| ଘୋଷଣା | ନାଟକ: ମୁଦ୍ରାରାକ୍ଷସ, ରଚନା : ମହାରାଜ ବିଶାଖା ଦତ୍ତ, ନାଟକର ଅନ୍ତିମ ଦୃଶ୍ୟ। (ମୁଦ୍ରାରାକ୍ଷସର ଦୃଶ୍ୟ ରାଜପଥ) |
| ରାକ୍ଷସ | ଆଃ.... କି ଦୁଃସହ ଯନ୍ତଣା। ପ୍ରଭୁଭକ୍ତ ରାକ୍ଷସ ଆଜି ବିଶ୍ୱାସଘାତକ, ଘୃଣ୍ୟ। ପ୍ରଭୁ ହତ୍ୟାର ପ୍ରତିଶୋଧ ନେବା ପାଇଁ ଉପଯାଚକ ହୋଇ ମୁଁ ଯାହାର ସେବା କରିବାକୁ ପ୍ରତିଶ୍ରୁତି ଦେଇଥିଲି, ସେ ଆଜି ମୋତେ ବିନା ଦୋଷରେ ବିଶ୍ୱାସଘାତକର ପଦବୀ ପ୍ରଦାନ କରି ତ୍ୟାଗ କରିଛି। ଏବେ ମୋର ଉପାୟ କ'ଣ ? ଅମାତ୍ୟ ରାକ୍ଷସର ଏମିତି ହୀନ ବୀର୍ଯ୍ୟ ଭାବେ ଜୀବନ ଧାରଣ କରିବା ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର। ତା'ହେଲେ କ'ଣ ମୁଁ ଆତ୍ମହତ୍ୟା କରିବି ? ନା-ନା- ଆତ୍ମହତ୍ୟା। ମହାପାପ। |
| ଚର | (ପ୍ରବେଶ, ଛଦ୍ମବେଶରେ) ଅମାତ୍ୟ ରାକ୍ଷସଙ୍କର ଜୟ ହେଉ। |
| ରାକ୍ଷସ | ଅମାତ୍ୟ ସମ୍ବୋଧନ କରି ମୋତେ ଆଉ ଲଜ୍ଜା ଦିଅ ନାହିଁ ବତ୍ସ। |
| ଚର | ତଥାପି ଆପଣ ଆମର ପୂଜନୀୟ ଅମାତ୍ୟ। |
| ରାକ୍ଷସ | କିନ୍ତୁ ତୁମେ କିଏ ବତ୍ସ ? |
| ଚର | ମହାରାଜ ନନ୍ଦଙ୍କର ପରଜା, ଆପଣଙ୍କର ପରଜା। (ବାହାରେ କୋଳାହଳ) ଏଇ ଶୁଣନ୍ତୁ କୋଳାହଳ। ସେମାନେ ଆସିଯିବେ। ଆପଣ ଏଇନେ ପଳାଇ ଯାଆନ୍ତୁ। |
| ରାକ୍ଷସ | ପଳାୟନ କରିବି କାହିଁକି ? |
| ଚର | ଆପଣ କ'ଣ ଜାଣିନାହାନ୍ତି, ଏଣିକି ଅବିଶ୍ୱାସୀ ଆଉ କପଟୀମାନଙ୍କର ଶାସନ ଚାଲିଛି। ସାରା ରାଜ୍ୟ ବୁଲି ବୁଲି ସେମାନେ ଏବେ ନନ୍ଦରାଜ ଭକ୍ତ ପ୍ରଜାମାନଙ୍କୁ ବାନ୍ଧି ପକାଉଛନ୍ତି। |
| ରାକ୍ଷସ | ମୁଁ ଜାଣେ ବତ୍ସ। |
| ଚର | ତଥାପି ଆପଣ ଏମିତି ବୁଲୁଛନ୍ତି କାହିଁକି ? ଆପଣ ଯେ ରାଜଦ୍ରୋହ ଅପରାଧରେ ଅପରାଧୀ। |
| ରାକ୍ଷସ | ତା' ମଧ୍ୟ ଜାଣେ। |
| ଚର | ଏଇମାତ୍ର ମୁଁ ଖବର ପାଇ ଆସିଲି ଯେ ପର୍ବତେଶ୍ୱରଙ୍କ ପୁତ୍ର ମଳୟକେତୁ ବନ୍ଦୀ ହୋଇଛନ୍ତି। |
| ରାକ୍ଷସ | ଏଁ କ'ଣ କହିଲ ? ଏମିତି ହେବ ବୋଲି ମୁଁ ଜାଣିଥିଲି। କିନ୍ତୁ ତାଙ୍କୁ ବନ୍ଦୀ କଲା କିଏ ? |
| ଚର | ଭାଗୁରାୟଣ ଆଦି ଗୁପ୍ତଚରମାନେ। |
| ରାକ୍ଷସ | କ'ଣ କହିଲ ? ଭାଗୁରାୟଣ ଗୁପ୍ତଚର ? |
| ଚର | ସେଇଆ ତ ଶୁଣି ଆସିଲି। ଆହୁରି ଶୁଣିଲି ଆଜି ସଞ୍ଜ ପୂର୍ବରୁ ଚନ୍ଦନ ଦାସ ମହାଜନଙ୍କୁ ରାଜଦ୍ରୋହ ଅପରାଧରେ ଶୂଳୀ ଦିଆଯିବ। |
| ରାକ୍ଷସ | ନା, ଅସମ୍ଭବ। ଯେମିତି ହେଲେ ବି ତା'କୁ ଉଦ୍ଧାର କରିବାକୁ ପଡ଼ିବ। |
| ଚର | କିନ୍ତୁ କାହାର ବା ମୃତ୍ୟୁ ଭୟ ନାହିଁ ଯେ ତାଙ୍କୁ ବଞ୍ଚେଇବାକୁ ଯିବ। |
| ରାକ୍ଷସ | ମୁଁ ଯିବି। ମୁଁ ତାଙ୍କୁ ଉଦ୍ଧାର କରିବି। |
| ଚର | ତା'ହେଲେ ସେମାନେ ଆପଣଙ୍କୁ ହତ୍ୟା କରିବେ। |
| ରାକ୍ଷସ | କରନ୍ତୁ, କ୍ଷତି କ'ଣ ? ଏମିତି ବିଶ୍ୱାସଘାତକ ଆଉ ମିତ୍ରଦ୍ରୋହୀର ଅପବାଦ ନେଇ ବଞ୍ଚିବା ଅପେକ୍ଷା ମୃତ୍ୟୁ ବରଂ ଶ୍ରେୟସ୍କର। |

ଚର ହେଉ, ଯେମିତି ଆପଣଙ୍କର ଇଚ୍ଛା। ଈଶ୍ୱର ଆପଣଙ୍କର ମଙ୍ଗଳ କରନ୍ତୁ। (ପ୍ରସ୍ଥାନ। ପ୍ରବେଶ କଲେ ବନ୍ଦୀ ଚନ୍ଦନ ଦାସ ଓ ଘାତକ)

ଘାତକ ବେଶରେ : ଶୁଣ ଶୁଣ ଶୁଣ...ଅମାତ୍ୟ ରାକ୍ଷସଙ୍କର ପରିବାକୁ ଆଶ୍ରୟ ଦେଇ ରାଜଦ୍ରୋହ କରିଥିବା (ସିଦ୍ଧାର୍ଥକ) ଅଭିଯୋଗରେ ଅଭିଯୁକ୍ତ ବଣିକ ଚନ୍ଦନ ଦାସଙ୍କୁ ଆଜି ଶୂଳୀ ଦିଆଯିବ।

ଚନ୍ଦନ ଶୀଘ୍ର ମୃତ୍ୟୁଦଣ୍ଡ ପାଳନ କର ଘାତକ। ମୁଁ ଆଉ ଏ ବିଶ୍ୱାସଘାତକ ପୃଥିବୀରେ ତିଳେମାତ୍ର ବଞ୍ଚିବାକୁ ଚାହେଁନା। ବରଂ ତା' ଅପେକ୍ଷା ମିତ୍ର ପାଇଁ ପ୍ରାଣ ଦେବାକୁ ଗର୍ବ ମନେ କରେ।

ରାକ୍ଷସ ନା....ବନ୍ଧୁ ତୁମେ ମରିପାରନା। ତୁମେ ଯେ ମହାନ।

ଚନ୍ଦନ ଅମାତ୍ୟ! ଏ ଆପଣ କ'ଣ କଲେ?

ରାକ୍ଷସ ମୁଁ ଠିକ୍ କରିଛି ମିତ୍ର। ତୁମ ଭଳି ବନ୍ଧୁ ପାଇ ମୁଁ ତା'କୁ ହରାଇ ଦେବାକୁ ଚାହେଁନା।

ଚନ୍ଦନ ଏ ଜୀବନ ଠାରୁ ସେ ଜୀବନ ଯେ ଅଧିକ ମୂଲ୍ୟବାନ।

ଚାଣକ୍ୟ (ପ୍ରବେଶୀ) ବିଷ୍ଣୁଗୁପ୍ତଙ୍କର ପ୍ରଣାମ ଗ୍ରହଣ କରନ୍ତୁ ଅମାତ୍ୟ ରାକ୍ଷସ।

ରାକ୍ଷସ ମୋତେ ଅମାତ୍ୟ ସମ୍ବୋଧନ ନ କଲେ ଅନେକ ଖୁସି ହେବି। ବରଂ ଚଣ୍ଡାଳମାନଙ୍କୁ କୁହ, ବନ୍ଧୁ ଚନ୍ଦନ ଦାସଙ୍କୁ ମୁକ୍ତ କରି ସେମାନେ ମୋତେ ହତ୍ୟା କରନ୍ତୁ।

ଚାଣକ୍ୟ କିଏ ଚଣ୍ଡାଳ? ଏମାନେ ଯେ ମୋର ପ୍ରିୟ। ସିଦ୍ଧାର୍ଥକ ଆଉ କରଭକ। ଆପଣ ଜାଣନ୍ତି ନାହିଁ ଯେ ଯେଉଁ ପତ୍ର ପାଇଁ ଆପଣଙ୍କ ସହିତ ମଳୟକେତୁର ଭେଦ ହେଲା, ଏଇ ସିଦ୍ଧାର୍ଥକ ଦ୍ୱାରା ହିଁ ଶକଟ ଦାସଙ୍କ ହାତରୁ ଛଳନାରେ ସେ ପତ୍ର ମୁଁ ଲେଖାଇଥିଲି।

ରାକ୍ଷସ ଓଃ....ଧିକ ମୋତେ। ବିନା ଦୋଷରେ ମୁଁ ଶକଟ ଦାସଙ୍କ ଭଳି ବନ୍ଧୁଙ୍କୁ ସନ୍ଦେହ କଲି ଯାହା।

ଚାଣକ୍ୟ ଅମାତ୍ୟ, ଆଉ ଛଳନା କରି ଲାଭ ନାହିଁ। ଆପଣ କେବଳ ଏତିକି ଜାଣି ରଖନ୍ତୁ ଯେ ଭାଗୁରାୟଣ, ଜୀବସିଦ୍ଧି, ସିଦ୍ଧାର୍ଥକ ଆଦି ମୋରି ନିର୍ଦ୍ଦେଶରେ ଏ ସବୁ କରାଇଛନ୍ତି। ଆଉ ପର୍ବତେଶ୍ୱରଙ୍କର ସେଇ ଅଳଙ୍କାର ଯାହା ଆପଣ ପିନ୍ଧିଥିଲେ, ତାହା ମଧ୍ୟ ଆପଣଙ୍କୁ ବିକ୍ରି କରିବା ପାଇଁ ଗୋପନରେ ମୁଁ ପଠାଇଥିଲି। ତା' ଛଡ଼ା ଚନ୍ଦ୍ରଗୁପ୍ତ ଆଉ ମୋ ମଧ୍ୟରେ ଯେଉଁ ମନାନ୍ତର କଥା ଚରମୁଖରୁ ଆପଣ ଶୁଣିଥିଲେ, ତାହା ମନାନ୍ତରର ଛଳନା ମାତ୍ର। ଏସବୁ କୌଟିଲ୍ୟର କୂଟନୀତି କେବଳ ଆପଣଙ୍କୁ ପାଇବା ପାଇଁ।

ରାକ୍ଷସ ତା'ହେଲେ ଏଥର ମୋତେ ହତ୍ୟା କରନ୍ତୁ।

ଚାଣକ୍ୟ ନା... ଆପଣଙ୍କୁ ହତ୍ୟା କରିବାକୁ ଏତେ ଛଳନାର ପ୍ରୟୋଜନ ନ ଥିଲା।

ରାକ୍ଷସ ତା'ହେଲେ ଆପଣଙ୍କର ଉଦ୍ଦେଶ୍ୟ?

ଚାଣକ୍ୟ ଅତି ମହତ। ମୁଁ ଚାହେଁ ଆପଣ ନନ୍ଦପୁତ୍ର ଚନ୍ଦ୍ରଗୁପ୍ତଙ୍କୁ ରାଜକାର୍ଯ୍ୟରେ ସାହାଯ୍ୟ କରନ୍ତୁ।

ରାକ୍ଷସ ଅସମ୍ଭବ। ମୋର ପ୍ରଭୁ ହତ୍ୟାକାରୀର ସେବା କରିବା ମୋ ପକ୍ଷରେ ଅସମ୍ଭବ।

ଚାଣକ୍ୟ ନନ୍ଦବଂଶର ଧ୍ୱଂସ ପାଇଁ ଦାୟୀ ଚନ୍ଦ୍ରଗୁପ୍ତ ନୁହେଁ, ବରଂ ମୁଁ। ସେ ତ ଉପଲକ୍ଷ୍ୟ ମାତ୍ର। ତା'ଛଡ଼ା ସେ ମଧ୍ୟ ନନ୍ଦପୁତ୍ର। ଅତଏବ ତା'ର ଅମାତ୍ୟ ପଦ ଗ୍ରହଣ କରିବାରେ ଆପଣଙ୍କର ଆପତ୍ତିର କିଛି କାରଣ ନାହିଁ। (ଚନ୍ଦ୍ରଗୁପ୍ତ ଆଦିର ପ୍ରବେଶ)

ଚାଣକ୍ୟ ଚନ୍ଦ୍ରଗୁପ୍ତ ! ଅମାତ୍ୟ ରାକ୍ଷସଙ୍କୁ ପ୍ରଣାମ କର ବତ୍ସ।

ଚନ୍ଦ୍ରଗୁପ୍ତ ପ୍ରଣାମ ଗ୍ରହଣ କରନ୍ତୁ ଆର୍ଯ୍ୟ।

ଚାଣକ୍ୟ ଆଶୀର୍ବାଦ କରନ୍ତୁ ଅମାତ୍ୟ, ସେ ଯେ ନିଷ୍ପାପ।

ରାକ୍ଷସ ଯଶସ୍ୱୀ ହୁଅ ବତ୍ସ। (ଚନ୍ଦ୍ରଗୁପ୍ତଙ୍କୁ ପ୍ରଣାମ କଲେ)

ଚାଣକ୍ୟ ଚନ୍ଦ୍ରଗୁପ୍ତ ବିଳମ୍ବରେ ହେଲେ ମଧ୍ୟ ତୁମର ଭାଗ୍ୟ ଆଜି ଖୁବ୍ ପ୍ରସନ୍ନ। ବହୁ ଚେଷ୍ଟା ପରେ ଆଜି ତୁମ ପିତାଙ୍କର ପ୍ରଧାନ ଅମାତ୍ୟଙ୍କୁ ତୁମ ନିକଟକୁ ଫେରାଇ ଆଣିପାରିଛି। ସେ ମଧ୍ୟ ତୁମକୁ ଆଶୀର୍ବାଦ କରିଛନ୍ତି। ଏଣିକି ତୁମେ ଧନ୍ୟ ହେଲ।

ଚନ୍ଦ୍ରଗୁପ୍ତ (ରାକ୍ଷସଙ୍କୁ) ଅମାତ୍ୟ ଏବଂ ଆଚାର୍ଯ୍ୟ, ଦୁହେଁ ହିଁ ମୋର ନୀତି ରକ୍ଷକ। ଏଣିକି ଆପଣମାନେ ମୋତେ ସାହାଯ୍ୟ କରନ୍ତୁ।

ରାକ୍ଷସ କିନ୍ତୁ ମୁଁ କିପରି ସାହାଯ୍ୟ କରିପାରିବି ?

ଚାଣକ୍ୟ ମହାଅମାତ୍ୟର ଏଇ ଗୁରୁଦଣ୍ଡ, ଯାହା ଏତେ ଦିନ ମୋତେ ବହନ କରିବାକୁ ପଡ଼ିଥିଲା, ତାହା ଏଣିକି ଆପଣ ବହନ କରନ୍ତୁ ମହାଅମାତ୍ୟ।

ରାକ୍ଷସ ମାତ୍ର ଆପଣଙ୍କ ଭଳି ଯୋଗ୍ୟ ବ୍ୟକ୍ତି ଥାଉ ଥାଉ ସେ ଦାୟିତ୍ୱ ମୋ ପକ୍ଷରେ ଧାରଣ କରିବା ଲଜ୍ଜାକର।

ଚାଣକ୍ୟ ମୁଁ ଯୋଗ୍ୟ ସତ୍ୟ ମାତ୍ର ଆପଣ ସୁଯୋଗ୍ୟ। ତା'ଛଡ଼ା ଆପଣ କ'ଣ ବନ୍ଧୁ ଚନ୍ଦନ ଦାସଙ୍କର ମୁକ୍ତି ଚାହାଁନ୍ତି ନାହିଁ ?

ରାକ୍ଷସ ସେଥିପାଇଁ ତ ମୁଁ ଆତ୍ମସମର୍ପଣ କରିଛି।

ଚାଣକ୍ୟ (ହସି) ଆପଣ ଆନନ୍ଦରେ ଏ ଦଣ୍ଡ ଗ୍ରହଣ କଲେ ହିଁ ଯେ କେବଳ ମିତ୍ର ଚନ୍ଦନ ଦାସଙ୍କର ମୁକ୍ତି ଯେ ସମ୍ଭବ।

ରାକ୍ଷସ ଏହା କ'ଣ ସର୍ତ୍ତ ?

ଚାଣକ୍ୟ ନା....ରାଜନୀତି।

ରାକ୍ଷସ ବେଶ୍ ରାଜି ଅଛି। (ଦଣ୍ଡ ଧାରଣ କଲେ)

ଚାଣକ୍ୟ ଆଃ...କି ଆନନ୍ଦ, କି ଶାନ୍ତି....ଚନ୍ଦ୍ରଗୁପ୍ତ...

ଚନ୍ଦ୍ରଗୁପ୍ତ ମୁଁ ମଧ୍ୟ ଧନ୍ୟ ହେଲି ଆଚାର୍ଯ୍ୟ....(ବନ୍ଦୀ ମଳୟକେତୁଙ୍କୁ ନେଇ ଭାଗୁରାୟଣର ପ୍ରବେଶ)

ଭାଗୁରାୟଣ ଆଚାର୍ଯ୍ୟ ! ବନ୍ଦୀ ମଳୟକେତୁର ବିଚାର !...

ଚାଣକ୍ୟ ମୁଁ ନୁହେଁ, ମୁଁ ନୁହେଁ.... ଏଣିକି ପ୍ରଧାନ ଅମାତ୍ୟ ରାକ୍ଷସଙ୍କୁ କୁହ ସେ ବିଚାର କରିବେ। ଅମାତ୍ୟ ! ମଳୟକେତୁର ବିଚାର....

ରାକ୍ଷସ ଆଚାର୍ଯ୍ୟ, ମିତ୍ର ମଳୟକେତୁଙ୍କ ନିକଟରେ କିଛିଦିନ ମୁଁ ଆଶ୍ରୟ ଗ୍ରହଣ କରିଥିଲି। ଅତଏବ ତାଙ୍କର ପ୍ରାଣରକ୍ଷା ମୋର ଏକାନ୍ତ ପ୍ରାର୍ଥନା।

ଚାଣକ୍ୟ ମୋତେ ନୁହେଁ ଅମାତ୍ୟ ! ମହାରାଜ ଚନ୍ଦ୍ରଗୁପ୍ତ ! ଅମାତ୍ୟ ରାକ୍ଷସଙ୍କର ପ୍ରଥମ ଅନୁରୋଧ ପ୍ରତି ସମ୍ମାନ ଦେବା ତୁମର କର୍ତ୍ତବ୍ୟ।

ଭାଗୁରାୟଣ   ଆଚାର୍ଯ୍ୟ !

ଚାଣକ୍ୟ   ନଗରପାଳଙ୍କୁ କୁହ, ଏ ସମ୍ବାଦ ସେ ପ୍ରଚାର କରନ୍ତୁ ଯେ ଅମାତ୍ୟ ରାକ୍ଷସ ମହାରାଜ ଚନ୍ଦ୍ରଗୁପ୍ତଙ୍କର ପ୍ରଧାନ ଅମାତ୍ୟ ପଦରେ ଅଧିଷ୍ଠିତ ହେଲେ ଏବଂ ତାଙ୍କର ଅନୁରୋଧ କ୍ରମେ ମହାରାଜ ଚନ୍ଦ୍ରଗୁପ୍ତ ମଳୟକେତୁଙ୍କୁ ମୁକ୍ତି ପ୍ରଦାନ କରି ତାଙ୍କର ପୈତୃକ ରାଜ୍ୟ ଓ ସମ୍ପତ୍ତି ତାଙ୍କୁ ଫେରାଇ ଦେଲେ। ଆଉ ତୁମ୍ଭେମାନେ ତାଙ୍କୁ ସସମ୍ମାନେ ନେଇ ତାଙ୍କର ରାଜ୍ୟାଭିଷେକ କରାଇ ଫେରିଆସ।

ଭାଗୁରାୟଣ   ଯଥା ଆଜ୍ଞା ଆଚାର୍ଯ୍ୟ।

ଚାଣକ୍ୟ   ଶୁଣ, ଛିଡ଼ା ହୁଅ। ଦ୍ୱାରପାଳଙ୍କୁ କହି ଘୋଷଣା କରାଅ ଯେ ଅମାତ୍ୟ ରାକ୍ଷସ ମହାରାଜ ଚନ୍ଦ୍ରଗୁପ୍ତଙ୍କର ପ୍ରଧାନ ଅମାତ୍ୟ ପଦ ଗ୍ରହଣ କରିଥିବାରୁ ମହାରାଜ ଅତ୍ୟନ୍ତ ପ୍ରୀତ ହୋଇ ମହାଜନ ଚନ୍ଦନ ଦାସଙ୍କୁ ମୁକ୍ତ କରିବା ସଙ୍ଗେ ସଙ୍ଗେ ଏଇ ରାଜ୍ୟର ଶ୍ରେଷ୍ଠ ମହାଜନ ପଦବୀରେ ଭୂଷିତ କରାଇଲେ ଏବଂ ବନ୍ଦୀଶାଳାରୁ ସମସ୍ତ ରାଜବନ୍ଦୀମାନଙ୍କୁ ମୁକ୍ତ କରିଦେବାକୁ ଆଦେଶ ଦେଲେ। ଯାଅ...ହେ ମହାରାଜ ଚନ୍ଦ୍ରଗୁପ୍ତ...ମହାମାତ୍ୟ ରାକ୍ଷସ, କୁହନ୍ତୁ, ମୁଁ ଆଉ ଆପଣମାନଙ୍କର କ'ଣ ଉପକାର କରିପାରେ ?

ଚନ୍ଦ୍ରଗୁପ୍ତ   ମୋତେ ରାଜପଦରେ ଅଭିଷିକ୍ତ କରାଇଲେ, ଅମାତ୍ୟ ରାକ୍ଷସଙ୍କ ସହିତ ମିତ୍ରତା କରାଇଦେଲେ। ମୋର ଆଉ କ'ଣ ପ୍ରୟୋଜନ ?

ରାକ୍ଷସ   ଧନ୍ୟ କୌଟିଲ୍ୟ ଧନ୍ୟ। ଧନ୍ୟ ଆପଣଙ୍କର କୂଟନୀତି।

ଚାଣକ୍ୟ   ପ୍ରିୟ ସାରଂରବ...ମୋର ବାନପ୍ରସ୍ଥ ଗମନର ଆୟୋଜନ କର ବତ୍ସ। (ଅନ୍ଧାର ହେଲା।) (ପୂର୍ବ ଦୃଶ୍ୟକୁ ପ୍ରତ୍ୟାବର୍ତ୍ତନ)

ଚାଣକ୍ୟ   ମୁଁ ଚାହିଁଥିଲେ ସେଦିନ ଅମାତ୍ୟ ରାକ୍ଷସଙ୍କୁ ହତ୍ୟା କରି ନିଜେ ପ୍ରଧାନ ଅମାତ୍ୟ ପଦରେ ଅଧିଷ୍ଠିତ ରହି ରାଜଦଣ୍ଡ ଆଉ ରାଜଶକ୍ତିର ବିନିଯୋଗ କରି ଆଜୀବନ ରାଜସୁଖ ଭୋଗ କରିପାରିଥାନ୍ତି। କିନ୍ତୁ ମୁଁ ତାହା କରିନଥିଲି। ମୁଁ ଜାଣିଥିଲି ଅମାତ୍ୟ ରାକ୍ଷସ ଜଣେ ନିଷ୍ଠାପର ଓ ନିଃସ୍ୱାର୍ଥପର ବ୍ୟକ୍ତିତ୍ୱ। ଜଣେ ପ୍ରଜାବତ୍ସଳ ଏବଂ ଉତ୍ତମ ବିଚାରବନ୍ତ ଅଧିକାରୀ। ତାଙ୍କ ଭଳି ଜଣେ କର୍ମତତ୍ପର ତୀକ୍ଷ୍ଣ ଧିସମ୍ପନ୍ନ ଅଧିକାରୀଙ୍କ ହାତରେ ରାଜ୍ୟ ଶାସନର ଭାର ଅର୍ପଣ କରି ମୁଁ କ'ଣ ଭୁଲ୍ କରିଥିଲି ?

ଦ୍ରୌପଦୀ   ନା...ହୁଏତ ନୁହେଁ। ଆପଣ ହୁଏତ ଭାବିଥିଲେ, ଦୁରାଚାରୀ ନନ୍ଦକୁ ଦଣ୍ଡ ପ୍ରଦାନ କରି ଶାସନକୁ କଳଙ୍କମୁକ୍ତ କରିବା ପାଇଁ ଠିକ୍ ଯେମିତି ଦିନେ ମୁଁ ମୋର ନିର୍ଯାତନାର ପ୍ରତିଶୋଧ ନେବା ପାଇଁ କେଶକୁ ଉନ୍ମୁକ୍ତ ରଖି ଦୁଃଶାସନର ବକ୍ଷ ରକ୍ତ ଦେଇ ତା'କୁ ବାନ୍ଧିବାକୁ ଚାହିଁଥିଲି। ଭାବିଥିଲି ଦୁଃଶାସନର ଭୟଙ୍କର ପରିଣତି ଦେଖି କାମନାଲିପ୍ସୁ, ଉଶୃଙ୍ଖଳିତ ମଣିଷମାନେ ଭୟଭୀତ ହେବେ। ନାରୀମାନଙ୍କୁ ଉତ୍ତମ ମର୍ଯ୍ୟାଦା ମିଳିବ। କିନ୍ତୁ ହେଲା କ'ଣ ? ଆପଣଙ୍କ ଚୁଟିରେ ଗଣ୍ଠି ପଡ଼ିଲା, ମୋ କେଶ ମଧ୍ୟ କବରୀ ଆକାର ଧାରଣ କଲା। ହେଲେ ନାରୀର ନିର୍ଯାତନା ସେଦିନ ଯେଉଁଠି ଥିଲା, ଆଜି ବି ସେଇଠି ଅଟକି ରହିଗଲା। କେମିତି ? କାହିଁକି ?

ଚାଣକ୍ୟ   କିନ୍ତୁ ଚନ୍ଦ୍ରଗୁପ୍ତ ଭଳି ରାଜା କେବେ ବଦଳି ଯାଇ ପାରେନା...

ଦ୍ରୌପଦୀ   ହୁଏତ ତାହା ସତ୍ୟ ଆଚାର୍ଯ୍ୟ। କିନ୍ତୁ ଚନ୍ଦ୍ରଗୁପ୍ତ ତ ଆଉ ଅମର ରହିବାର ବର ପାଇନଥିଲେ। ତାଙ୍କ ପରବର୍ତ୍ତୀ ରାଜାମାନଙ୍କ କାର୍ଯ୍ୟକଳାପକୁ କେବେ ଲକ୍ଷ୍ୟ କରିଛନ୍ତି ?

ଚାଣକ୍ୟ   ଆବଶ୍ୟକତା କେବେ ଉପଲବ୍ଧି କରିନଥିଲି।

ଦ୍ରୌପଦୀ    ଉଚିତ କଥା କହିଛନ୍ତି, ଯାହା ସ୍ୱାଭାବିକ। କିନ୍ତୁ ଜାଣି ଆଶ୍ଚର୍ଯ୍ୟ ହେବେ ଯେ କ୍ଷମତା ପାଇବା ପାଇଁ ମଣିଷ ଯେପରି ସାଧାରଣ ମଣିଷରୁ ମହାମାନବର ଆଖ୍ୟା ପାଇବାର ପ୍ରୟାସ କରେ ଆଉ ଥରେ କ୍ଷମତାର ଡୋରି ତା' ହାତକୁ ଆସିଗଲା ପରେ ସେ ମହାମାନବରୁ ମହାଦାନବରେ ପରିଣତ ହେବାକୁ ମଧ୍ୟ କୁଣ୍ଠାବୋଧ କରେ ନାହିଁ।

ଚାଣକ୍ୟ    ଅସମ୍ଭବ...

ଦ୍ରୌପଦୀ    ଆଦୌ ଅସମ୍ଭବ ନୁହେଁ। ସିଂହାସନ ଆଉ କ୍ଷମତାର ଅହଂକାର ମଣିଷକୁ କିପରି ରୂପାନ୍ତରିତ କରେ, ତା'ର ଉଦାହରଣ ଦେଖିବାକୁ ଚାହାଁନ୍ତି, ଦେଖନ୍ତୁ....

ଘୋଷଣା    ନାଟକ : ଜଣେ ରାଜା ଥିଲେ, ନାଟ୍ୟକାର : ଡ. ବିଜୟ ମିଶ୍ର। ଅନ୍ତିମ ଦୃଶ୍ୟ।)

## ଦୃଶ୍ୟ ବଦଳିଗଲା

(ଜୋରରେ ହସି ଉଠିଲେ ରାଜା। ଅପମାନିତ ହୋଇ ଚିତ୍କାର କଲେ।)

ରାଜା    ହସ ବନ୍ଦ କର।

ରାଣୀ    (ଆହୁରି ଜୋରରେ ହସି ଉଠିଲେ)

ରାଜା    ମୁଁ କହୁଛି, ମୋର ଇଚ୍ଛା ହିଁ ପୂରଣ ହେବ।

ରାଣୀ    (ସେମିତି ହସୁଥାନ୍ତି)

ରାଜା    ରାଣୀ !

ରାଣୀ    (ଖୁବ୍ ଜୋରରେ ହସିଉଠିଲେ)

ରାଜା    ସିଂହାସନରୁ ସିଂହାସନ ପାଇଁ ମୋର ଆଦେଶ। ଓଟମୁହାଁମାନେ ହିଁ ମୋର ଶ୍ରେଷ୍ଠ ପ୍ରଜା ଏବଂ ମୁଁ ସେମାନଙ୍କର ଶ୍ରେଷ୍ଠ ରାଜା। ମୋ ପୂର୍ବରୁ କେହି ନ ଥିଲା। ମୋ' ପରେ କେହି ଆସିବେନି। ଇଏ ମୋ'ର ଆଦେଶ।

(ରାଣୀଙ୍କର କିନ୍ତୁ ହସ ଆହୁରି ଜୋରରେ ବଢ଼ି ଚାଲିଥିଲା। ଯେପରି ସେ ହସ ରାଜାଙ୍କର ସମସ୍ତ କର୍ତ୍ତୃତ୍ୱ, ସମସ୍ତ ନିଷ୍ଠୁରତାକୁ ଏକ ପ୍ରଚଣ୍ଡ ଉପହାସ। ରାଜାଙ୍କର ଆସ୍ଫାଳନ ଏବଂ ରାଣୀଙ୍କର ହସ ଯେପରି ଆଉ ବନ୍ଦ ହେବନି ଏବଂ ଏଇ ପ୍ରକ୍ରିୟା ମଧ୍ୟରେ ମଞ୍ଚ ଅନ୍ଧାର ହେଲା।)

## ପରବର୍ତ୍ତୀ ଦୃଶ୍ୟ

(ଏକେ ତ ଅଝାଡ଼ ଜଙ୍ଗଲ, ସେଥିରେ ପୁଣି କଳା କିଟିକିଟିଆ ଅନ୍ଧାର। ସେଇ ଅନ୍ଧାର ଭିତରେ ଜଣେ ଲୋକ ପଡ଼ି ଉଠି ଧାଇଁଚି। ମଝିରେ ମଝିରେ ସେ ଝୁଣ୍ଟି ପଡ଼ି ବସି ପଡୁଚି, ପୁଣି ଟିକିଏ ଦମ୍ ନେଇ ଉଠି ପଡ଼ି ଦ୍ରୁତ ଗତିରେ ଚାଲିଛି। ଝାପ୍‌ସା ଝାପ୍‌ସା ହୋଇ ଲୋକଟାର ମୁହଁ ଟିକିଏ ଟିକିଏ ଦେଖାଯାଉଚି। କେହି ଚିହ୍ନା ଲୋକ, ଟିକିଏ ନିଠେଇ ଠଉରି ନେଲେ ଜାଣିପାରିବ, ସେ ଲୋକଟା ଆଉ କେହି ନୁହେଁ, ନିରଞ୍ଜନ। ନିରଞ୍ଜନ ଯାଇ ଗୁମ୍ଫା ପାଖରେ ପହଞ୍ଚିଥିଲା। ଗୁମ୍ଫା ଭିତରକୁ ମୁହଁ ଗଳେଇ ଡାକ ଛାଡ଼ିଲା।

| | |
|---|---|
| ନିରଞ୍ଜନ | ମୁଁ ଆସିଚି। ଶୁଣି ପାରୁଛନ୍ତି, ମୁଁ ନିରଞ୍ଜନ। ମୁଁ ଖବର ଆଣିଚି। (ଗୁମ୍ଫା ଭିତରୁ ବାହାରି ଆସିଲେ ବିଶାଳବାହୁ, ଧୂରନ୍ଧର ଆଉ ବିଦ୍ୟାଧର। ପ୍ରଥମେ ସେ ବିଶ୍ୱାସ କରି ପାରୁନଥିଲେ, ନିରଞ୍ଜନକୁ ଦେଖିବେ ବୋଲି। ତା'ପରେ ଆନନ୍ଦ ଆଉ ଉଲ୍ଲାସରେ ସେମାନେ ନିରଞ୍ଜନଙ୍କୁ କୁଣ୍ଢେଇ ପକେଇଲେ।) |
| ବିଦ୍ୟାଧର | ଖବର ? କି ଖବର ଆଣିଛ ? |
| ବିଶାଳବାହୁ | ଶୁଭ ନା ଅଶୁଭ ଖବର ? |
| ଧୁରନ୍ଧର | ସେ ଖବର କ'ଣ ଆମ ମୁକ୍ତିର ଖବର ? |
| ନିରଞ୍ଜନ | ସବୁ ବଦଳି ଯାଉଚି। ଭେଳିକି ଲାଗିଲା ପରି ଗୋଟିକ ପରେ ଗୋଟିଏ ଓଟମୁହାଁ ମଣିଷ ପାଲଟି ଯାଉଛନ୍ତି। |
| ବିଦ୍ୟାଧର | ଦେବୀ କଥା କହୁଚି ? କ'ଣ କହୁଚି ? କୋଉ ଭାଷାରେ ? |
| ନିରଞ୍ଜନ | ନା, ସେଇ ଚୁପ୍‌ଚାପ୍। ଟିକିଏ ଫୁରସତ୍ ପାଇଲେ ବସି ପଡ଼ି ଗାର ଟାଣୁଚି। |
| ବିଶାଳବାହୁ | ତା'ହେଲେ ? |
| ଧୁରନ୍ଧର | କେମିତି ବଦଳିଲେ ସେମାନେ ? |
| ନିରଞ୍ଜନ | ଠିକ୍ ଯେମିତି ମୁଁ ବଦଳି ଯାଇଥିଲି। ତା' ପାଖରେ ରହି। ତା' ଛୁଆଁ ସଂକ୍ରାମକ ରୋଗ ପରି ସମସ୍ତଙ୍କ ଆଡ଼କୁ ମାଡ଼ିଗଲା। ତା'ପରେ ଚାଲିଚି ତ ହଟଚମଟ ପାଲା। |
| ବିଦ୍ୟାଧର | ତା'ହେଲେ ତମେ କାହିଁକି ଆସିଚ ? |
| ନିରଞ୍ଜନ | କିଛି ସମୟ ଛୁଟି ନେଇ ଆସିଚି। ଆପଣମାନଙ୍କ ପାଖରେ ମୋ'ର ବିଶେଷ ଦରକାର। |
| ବିଶାଳବାହୁ | କ'ଣ ଦରକାର ? |
| ଧୁରନ୍ଧର | ଆମେ ତୁମକୁ କେମିତି ସାହାଯ୍ୟ କରିପାରିବୁ ? |
| ନିରଞ୍ଜନ | ଆପଣଙ୍କ ଭିତରୁ କେହି ଗୀତ ଲେଖି ପାରନ୍ତି ? |
| ବିଦ୍ୟାଧର | ଗୀତ ? |
| ନିରଞ୍ଜନ | ବୋଲାଯାଉଥିବା ଔଟିକ ଜାତୀୟ ସଂଗୀତ ପରି। |
| ବିଶାଳବାହୁ | ଠିକ୍ ସେମିତି ? |
| ନିରଞ୍ଜନ | ନା, ତାକୁ ଓଲଟେଇ। |
| ଧୁରନ୍ଧର | କାହିଁକି ? |
| ନିରଞ୍ଜନ | ଆଃ, ଲେଖି ଦିଅନ୍ତୁନା। ଏଣିକି ଲୋକମାନେ ଏଇ ନୂଆ ଗୀତ ଖାଲି ଗାଇବେ। ଲେଖି ଦିଅନ୍ତୁ। |
| ବିଦ୍ୟାଧର | ମୁଁ ଲେଖିଦେବି। |
| ନିରଞ୍ଜନ | ଲେଖନ୍ତୁ, ଲେଖନ୍ତୁ। ଯାହା କରିବେ, ଟିକିଏ ଜଲ୍‌ଦି କରନ୍ତୁ। ତେଣେ ଲୋକମାନେ ବଡ଼ ବିକଳ ହୋଇ ଚାହିଁ ବସିଥିବେ। |
| ବିଦ୍ୟାଧର | ହଉ, ଭିତରକୁ ଆସ। (ସେ ତିନି ଜଣ ନିରଞ୍ଜନକୁ ଧରି ଗଳି ଗଳି ଗୁମ୍ଫା ଭିତରକୁ ଚାଲିଗଲେ। ମଞ୍ଚ ଅନ୍ଧାର) |

## ପରବର୍ତ୍ତୀ ଦୃଶ୍ୟ

(ତେଣେ ଏତେ ସବୁ ଘଟି ଗଲାଣି ସିନା, ଏଣେ କିନ୍ତୁ ଦରବାରରେ ରାଜା, ରାଣୀ ସେମିତି ଅଛନ୍ତି। ମନ୍ତ୍ରୀ, ସେନାପତି, ସାଧବ, କଟୁଆଳ କିଏ କୁଆଡ଼େ ଗଲାଣି, ରାଜା ହାତ ଟେକି ଠିଆ ହୋଇଛନ୍ତି। ରାଣୀ ତାଙ୍କର କାଳିସୀ ଲାଗିଲା ପରି ହସୁଚନ୍ତି ତ ହସୁଚନ୍ତି। କେତେବେଳକେ ରାଜାଙ୍କର ହୋସ୍ ଆସିଲା। ରାଣୀ ଯେ ଅନେକ ବେଳୁ ହସୁଚନ୍ତି, ସେ କଥା ମୁଣ୍ଡକୁ ଢୁକିଲା। ସେ ରାଣୀଙ୍କୁ ଆକଟ କରି କହିଲେ.)

ରାଜା — ହସ ବନ୍ଦ କର।

(କିଏ କାହା କଥା ବା ଶୁଣୁଚି। ରାଣୀ ହସ ବନ୍ଦ କଲେନି କି ରାଜାଙ୍କ ଆଦେଶ ମାନିଲେ ନାହିଁ। ରାଜା ଚାରିଆଡ଼କୁ ନଜର ପକେଇଲେ, କେହି କୁଆଡ଼େ ନାହାନ୍ତି। ଦରବାରଟା ଖାଁ ଖାଁ ଲାଗୁଚି।)

ରାଜା — ଏଁ ଏ ପର୍ଯ୍ୟନ୍ତ କେହି ଆସୁନାହାନ୍ତି ?

ରାଣୀ — (ହସ) କେହି ଆସିବେନି। ଦରବାର ଖାଲି, ଆପଣ ଏକା।

ରାଜା — ଆଉ ତମେ ?

ରାଣୀ — ପୁତ୍ତଳିକା (ପୁ ପୁ...ପୁ ପୁତ୍ତଳିକା)

ରାଜା — ଏ ହସ ବନ୍ଦ କର।

ରାଣୀ — ଆଉ ଏ ହସ ବନ୍ଦ ହେବନି। ଗୋଟିଏ ଛୋଟିଆ ସ୍ରୋତ ନଦୀ ହୁଏ। ନଦୀ ପୁଣି ସମୁଦ୍ରରେ ମିଶିଯାଏ। ସେମିତି ମୋର ଏଇ ହସ ଏକରୁ ଅନେକ ହୋଇ ଅଟ୍ଟହାସ୍ୟରେ ପରିଣତ ହେବ। (ଧୀରେ ଧୀରେ ପ୍ରୋଜେକ୍ସନ ବଢ଼ିବ)

ରାଜା — ମୁଁ ତା' କରିବାକୁ ଦେବି ନାହିଁ। ମୁଁ ତୁମ ସମସ୍ତଙ୍କ ତଣ୍ଟି ଚିପି ଧରିବି। ସମସ୍ତଙ୍କର ହସ ବନ୍ଦ କରିଦେବି।

ରାଣୀ — ଚେଷ୍ଟା କରି ଦେଖନ୍ତୁ।

ରାଜା — ମନ୍ତ୍ରୀ, ସେନାପତି, ସାଧବ, କଟୁଆଳ, ଦରବାର ଆରମ୍ଭ ହେଇଯାଇଚି, ଆସ ଜାତୀୟ ସଙ୍ଗୀତ ଗାଅ।

ରାଣୀ — ଦରବାର ଖାଲି। ଗାଅ, ଜାତୀୟ ସଙ୍ଗୀତ କିଏ ଗାଉଚ ଗାଅ।

ରାଜା — କେହି ଆସିଲେନି ? ଠିକ୍ ଅଛି, ମୁଁ ନିଜେ ଜାତୀୟ ସଙ୍ଗୀତ ଗାଇବି। ରାଣୀ, ମୋ'ର ଆଦେଶ, ତୁମକୁ ବି ମୋ ସାଙ୍ଗରେ ଜାତୀୟ ସଙ୍ଗୀତ ଗାଇବାକୁ ହେବ। ଗାଅ।

(ଜାତୀୟ ସଙ୍ଗୀତ ରାଜା ନିଜେ ଗାଇବେ, ରାଣୀ ହସିବେ)

ଓଟ ପରି ଜୀବ ନାହିଁରେ ଭାଇ — ଶାନ୍ତି ତୁ ପାଇବୁ ଯା' ଓଟ ହୋଇ
ପିଠିରେ କୁଜଟା କି ମନୋହର — ତୋ' ନିରୀହ ଆଖି ଭାରି ସୁନ୍ଦର।

(ଗୀତ ଶେଷ ହେବା ଆଗରୁ ଭିତରକୁ ପଶି ଆସିଲା ନିରଞ୍ଜନ। ତା' ହାତରେ ଖଣ୍ଡେ କାଗଜ, ସେ ଉପରକୁ ଟେକି ଧରିଥାଏ। ଦରବାର ଭିତରେ କିଏ ଅଛି କି ନାହିଁ, ସେ ଖିଆଲ ତା'ର ନ ଥାଏ। ରାଜାଙ୍କର ଗୀତ ବନ୍ଦ, ରାଣୀଙ୍କର ହସ ବି ବନ୍ଦ। ନିରଞ୍ଜନ ନାଚି ନାଚି ଦରବାରଟାକୁ ଖେଦି ପକାଇଲା। କହୁଥାଏ)

| | |
|---|---|
| ନିରଞ୍ଜନ | ସେ ଗୀତ ନୁହେଁ, ସେ ଗୀତ ନୁହେଁ, ମୁଁ ନୂଆ ଗୀତ ଆଣିଚି, ନୂଆ ଗୀତ। |
| ରାଜା | କିଏ ? କିଏ ତୁମେ ? |
| ନିରଞ୍ଜନ | ମୁଁ ନିରଞ୍ଜନ। |
| | (ତା'ପରେ ସେ ଚାରିଆଡ଼କୁ ଅନେଇଲା। ଦେଖିଲା ରାଣୀ ମଞ୍ଚ ଉପରେ ଠିଆ ହୋଇଛନ୍ତି। ତାଙ୍କ ପାଖକୁ ଯାଇ ତାଙ୍କୁ ପଚାରିଲା) |
| ନିରଞ୍ଜନ | ସେମାନେ କୁଆଡ଼େ ଗଲେ ? ଦେବୀ କୁଆଡ଼େ ଗଲା ? |
| ରାଜା | ଧର, ତାକୁ ଧର, ତାକୁ ହତ୍ୟା କର। |
| | (ରାଣୀ ମଞ୍ଚାରୁ ଓହ୍ଲେଇ ଆସିଲେ। ନିରଞ୍ଜନର ହାତ ଧରିଲେ। ରାଜା ଭାବୁଥିଲେ, ନିରଞ୍ଜନକୁ ଆଣି ରାଣୀ ତାଙ୍କ ହାତକୁ ବଢ଼େଇ ଦେବେ। କିନ୍ତୁ ତା' ହେଲା ନାହିଁ। ରାଣୀ ତା' ହାତ ଧରି ଦରବାରରୁ ବାହାରି ଗଲେ। ରାଜା ଏକାବେଳକେ ଛାନିଆ ହୋଇଗଲେ।) |
| ରାଜା | ରାଣୀ, ଯାଅନି। ତାକୁ ନେଇଯାଅନି। ତା' ମୁଣ୍ଡ ମୋର ଦରକାର। (ଟିକିଏ ରହି) ତା'ହେଲେ ଜାତୀୟ ସଙ୍ଗୀତ ଗାଇବ କିଏ ? ଠିକ୍ ଅଛି, ମୁଁ ନିଜେ ଗାଇବି। |
| | (ଜାତୀୟ ସଙ୍ଗୀତ ରାଜା ଗାଇବେ) |
| | ଓଟ ପରି ଜୀବ ନାହିଁରେ ଭାଇ ଶାନ୍ତି ତୁ ପାଇବୁ ଯା' ଓଟ ହୋଇ |
| | (କିନ୍ତୁ ଇଏ କ'ଣ ? ଚାରିଆଡୁ ମାଡ଼ି ଆସୁଚନ୍ତି ପଲ ପଲ ହୋଇ ଲୋକ। ହାତ ମୁଠା କରି ଉପରକୁ ଟେକା ହୋଇଛି। ସେମାନଙ୍କ ଭିତରେ ମନ୍ତ୍ରୀ, ସେନାପତି, ସାଧବ, କଟୁଆଳ, ଦେହରକ୍ଷୀ, ସମସ୍ତେ ଅଛନ୍ତି। କିନ୍ତୁ ସେମାନେ ଓଟମୁହାଁ ନୁହନ୍ତି କି ପିଠିରେ ସେମାନଙ୍କର କୁଜ ନାହିଁ। ସେମାନଙ୍କ ମୁହଁରେ ଗୋଟିଏ ଗୀତ। ସମସ୍ତେ ଏକ ସ୍ୱରରେ, ଏକ ଲୟରେ ଗାଉଥାନ୍ତି। ବିପ୍ଲବର ଗୀତ ସମସ୍ତେ ଗାଇବେ।) |
| ସମସ୍ତେ | ଓଟ ଠାରୁ ହୀନ ଜୀବ ନାହିଁରେ ଭାଇ ପାରିବୁନି କଣ୍ଟା ସିଝୁ ଆଉ ଚୋବାଇ।<br>ଆମେ ସବୁ ଆସିଅଛୁଁ ତାତିଲା ବାଲିରୁ ଟାଣି ଆଣ ସେ ରାଜାକୁ ତା' ସିଂହାସନରୁ। |
| | (ରାଜାଙ୍କର ତ ଅକଲ ଗୁଡୁମ୍। ସେ କ'ଣ କହିବେ କିଛି ବୁଝି ପାରୁନଥିଲେ। କିନ୍ତୁ ସିଂହାସନରୁ ଟାଣି ଆଣିବା କଥା ଶୁଣି ସେ ଥୟ ଧରି ରହିପାରିଲେ ନାହିଁ। ଗୋଟାଏ କୁଦାରେ ମଞ୍ଚ ଉପରକୁ ଚଢ଼ି, ସିଂହାସନରେ ଖପ୍ କରି ବସି ପଡ଼ିଲେ। ସିଂହାସନରେ ବସିଲା ଉତ୍ତାରୁ ତାଙ୍କର ଟିକିଏ ଦମ୍ଭ ଆସିଲା। ସେତେବେଳକୁ ସମସ୍ତେ ସିଂହାସନ ଚାରିପାଖରେ ଘେରି ଯାଇଥିଲେ। ନିରଞ୍ଜନ ଓ ଦେବୀକୁ ସିଂହାସନ ପଛରୁ ଉଠେଇ ଆଣି କଢ଼େଇ କରି ଠିଆ ହୋଇଥାଏ। ରାଣୀ ଅନ୍ୟମାନଙ୍କର ନେତୃତ୍ୱ ନେଉଥିଲେ। ରାଜା ଘେରିଥିବା ଲୋକମାନଙ୍କୁ ଗହିରେଇକି ଦେଖିଲେ।) |
| ରାଜା | ଇଏ କ'ଣ ! ଇଏ ତ ସବୁ ମଣିଷ ମୁହାଁ। ମୋ ଓଟମୁହାଁମାନେ କୁଆଡ଼େ ଗଲେ ? ହତ୍ୟା କର ଏ ମଣିଷମୁହାଁମାନଙ୍କୁ। ପ୍ରତ୍ୟେକ ମସ୍ତକର ମୂଲ୍ୟ ତିରିଶ ହଜାର ସ୍ୱର୍ଣ୍ଣ ମୁଦ୍ରା। |
| | (କଥାଟା ଶୁଣି ସମସ୍ତେ ହୋ ହୋ କରି ହସି ଉଠିଲେ। ଯେମିତି ରାଜା ଗୋଟାଏ ଭାରି କଉତିକିଆ କଥା ସେମାନଙ୍କୁ ଶୁଣାଉଥିଲେ।) |
| ରାଜା | ହସ ବନ୍ଦ କର। ମୁଁ କହୁଚି, ହସ ବନ୍ଦ କର। |

ନିରଞ୍ଜନ ରାଜକୋଷଟା ଖାଲି ହୋଇଯିବ ରାଜା। ରାଜ୍ୟଟା ସାରା ସମସ୍ତେ ମଣିଷ ପାଲଟି ଗଲେଣି।

ରାଣୀ ଆଉ ଯେତେ ଚେଷ୍ଟା କଲେ ବି, ପାଦ ତଳେ ଆମକୁ ଚାପି ରଖି ପାରିବେନି।

ମନ୍ତ୍ରୀ ଡେରି କରୁଚ କାହିଁକି ? ତା'କୁ ଟାଣି ଆଣ ସିଂହାସନରୁ।

(ରାଜାଙ୍କର ଆଉ ଖସିବାରର ବାଟ ବନ୍ଦ। ଚାରିଆଡୁ ଲୋକ ମାଡ଼ି ଆସୁଛନ୍ତି ସିଂହାସନ ଦଖଲ କରିବା ପାଇଁ। ରାଜା ସିଂହାସନରେ ଜୋର କରି ବସି ପଡ଼ିଲେ। ସିଂହାସନ ହାତ ଦୁଇଟାକୁ ଜୋର୍ କରି ଜାବୁଡ଼ି ଧରିଲେ। ଆଉ ସେମିତି ତୋଡ଼ରେ କହିବାକୁ ଲାଗିଲେ, ଯେମିତି କିଛି ହୋଇନି।)

ରାଜା ପାରିବନି। ମୋତେ ଏଠୁ କେହି ହଟେଇ ପାରିବେନି। ମୁଁ ରାଜା, ଏ ସିଂହାସନ ମୋର।

ସମସ୍ତେ ଟାଣି ଆଣ, ଟାଣି ଆଣ।

ରାଜା ଟାଣିଲ ! ଟାଣିଲ ଦେଖିବା।

(ଲୋକମାନେ ରାଜାଙ୍କୁ ସିଂହାସନରୁ ଭିଡି ଆଣି ତଳେ ପକେଇ ଦେବାକୁ ବସିଚନ୍ତି। ଏଣେ ରାଜା ସିଂହାସନକୁ ଜାବୁଡ଼ି ଧରିଥାନ୍ତି। କିନ୍ତୁ ଏତେ ଲୋକଙ୍କ ଆଗରେ ରାଜା ତ ଏକା। ଶେଷବେଳକୁ ତାଙ୍କ ବଳ ହଟି ଆସିଲା। ଗୋଟିଏ ଟାଣରେ ସେ ସିଂହାସନରୁ ତଳକୁ ଗଡ଼ି ପଡ଼ିଲେ ମଞ୍ଚ ଉପରକୁ, ପୁଣି ମଞ୍ଚ ଉପରୁ ଗଡ଼ି ଗଡ଼ି ଆସି ଏକାବେଳକେ ତଳେ ମୁହଁ ମାଡ଼ି ପଡ଼ିଲେ। ତାଙ୍କ ଚେତା ବୁଡ଼ିଗଲା। ସମସ୍ତେ ତାଙ୍କ ଚାରିପାଖରେ ଘେରି ଆନନ୍ଦରେ କୋଳାହଳ କରି ଉଠିଲେ। ଏଇ ସମୟରେ ସମସ୍ତଙ୍କ କୋଳାହଳକୁ ଦବେଇ ନିରଞ୍ଜନର କଥା ଶୁଣାଗଲା। ସମସ୍ତେ ଚୁପ୍‌ଚାପ୍ ହୋଇଗଲେ।)

ନିରଞ୍ଜନ ଭାଇମାନେ, ତମେମାନେ ସମସ୍ତେ ଆଜି ଅଭିଶାପରୁ ମୁକ୍ତ। ରାଜା ଯାଇଚି। ଆଉ ଗୁମ୍ଫା ଭିତରେ ଲୁଚି ରହିଥିବା ସେଇ ତିନିଜଣ ବିଜ୍ଞ ଲୋକ, ସେମାନେ ବି ମୁକ୍ତ।

(ରାଣୀ ନିରଞ୍ଜନର ଭାଷଣ ଶୁଣୁଥିଲେ। କିନ୍ତୁ ତାଙ୍କ ମଗଜରେ ଅନ୍ୟ ଚିନ୍ତା ଖେଳୁଥିଲା। ସେ ଖୁବ୍ ଗଭୀର ଭାବରେ କ'ଣ ଚିନ୍ତା କରୁଥିଲେ। ନିରଞ୍ଜନର ଭାଷଣ ଶେଷ ହେଲା ପରେ ଚିନ୍ତିତ ମନରେ ସେ ତାଙ୍କ କଥା ପ୍ରକାଶ କଲେ।)

ରାଣୀ କିନ୍ତୁ ସିଂହାସନ ତ ଖାଲି ରହିବ ନାହିଁ।

ନିରଞ୍ଜନ ସିଂହାସନ ଭାଙ୍ଗି ଦିଅ।

ମନ୍ତ୍ରୀ ତା' କ'ଣ ହୁଏ ! ସିଂହାସନ ରହିବ। ତା' ଉପରେ ଜଣେ କାହାକୁ ବସିବାକୁ ପଡ଼ିବ।

(ଚିନ୍ତାଟା ସମସ୍ତଙ୍କୁ ଘାରିଲା, ଠିକ୍ କଥା ତ ! ସିଂହାସନରେ କେହି ନ ବସିଲେ ରାଜ୍ୟ ଚଳିବ କେମିତି ? ରାଜା ନ ଥାଇ ଫେର୍ ରାଜ୍ୟ ! ତେଣୁ ସେମାନେ ନିଜ ନିଜ ଭିତରେ ନିମ୍ନ କଣ୍ଠରେ କୁହାକୁହି ହେଲେ। ସମସ୍ତଙ୍କ ମନରେ ସେଇ ଗୋଟିଏ ପ୍ରଶ୍ନ, ଗୋଟିଏ କଥା, କିଏ ବସିବ ? ରାଣୀ ସମସ୍ତଙ୍କ ଆଡ଼କୁ ଥରେ ଥରେ ଅନେଇ ଗଲେ। ସେ ମନେ ମନେ ଜଣେ ଉପଯୁକ୍ତ ଲୋକ ଖୋଜୁଥିଲେ। କିନ୍ତୁ କେହି ତାଙ୍କ ମନକୁ ପାଉନଥିଲା। ଘୁରି ଘୁରି ହଠାତ୍ ତାଙ୍କ ଆଖି ଯାଇ ନିରଞ୍ଜନ ଉପରେ ପଡ଼ିଲା। ସେ ତା' ଆଡ଼କୁ ଆଗେଇ ଆସିଲେ। ତା' ହାତ ଧରିଲେ।)

ରାଣୀ (ନିରଞ୍ଜନକୁ) ତମେ ବସିବ ? ତମେ ବସିବ ! ତମେ ହିଁ ଏ ସିଂହାସନ ଉପରେ ବସିବ।

(ସମସ୍ତେ ଯେମିତି ଉପଯୁକ୍ତ ଲୋକଟିଏ ପାଇଗଲେ। ଆଉ ଚିନ୍ତା ନାହିଁ, ଦ୍ୱିଧା ନାହିଁ। ତେଣୁ ସମସ୍ତେ ଏକବାକ୍ୟରେ ସମସ୍ୱରରେ କହି ଉଠିଲେ।)

ସମସ୍ତେ ହଁ, ତମେ ବସିବ।

ରାଣୀ (ପ୍ରହରୀକୁ) ଯାଅ, ମୁକୁଟ ନେଇ ଆସ।

ନିରଞ୍ଜନ (ଭୟରେ) ନାଇଁ ନାଇଁ, ମୋତେ ସେ ଝାମେଲାରେ ପୁରାନ୍ତୁନି। (ଦେବୀକୁ, ତା' ହାତ ଧରି) ଆ' ଝିଅ ଯିବା।

ରାଣୀ ନା, ତୁମେ ଯାଇପାରବନି, ଆସ !

(ନିରଞ୍ଜନ ଦେବୀର ହାତ ଧରିଥାଏ। ରାଣୀ ନିରଞ୍ଜନ ହାତ ଧରି ପାହାଚ ଚଢ଼ି ମଞ୍ଚ ଉପରକୁ ଉଠିଲେ। ଦେବୀ ବି ଟାଣି ହୋଇ ତାଙ୍କ ସାଙ୍ଗରେ ଗଲା। ରାଣୀ ନିରଞ୍ଜନକୁ ସିଂହାସନରେ ବସେଇ ଦେଲେ। ତେଣେ ମୂର୍ଚ୍ଛିତ ରାଜାଙ୍କ ମୁଣ୍ଡରୁ ମୁକୁଟ କଢ଼ାଗଲା, ପୋଷାକ କଢ଼ାଗଲା। ନିରଞ୍ଜନକୁ ପୋଷାକ ପିନ୍ଧେଇ ତା' ମୁଣ୍ଡରେ ମୁକୁଟ ବାନ୍ଧିଦେଲେ ରାଣୀ। ପାରମ୍ପରିକ ରୀତିରେ ବାଦ୍ୟବୃନ୍ଦ, ବୀରବାଜା, ଭେରୀ ତୁରୀ ଇତ୍ୟାଦି ବାଜି ଉଠିଲା। ମନ୍ତ୍ରୀ ଜୟଧ୍ୱନି ଦେଲେ। ଅନ୍ୟମାନେ ପାଳି ଧରିଲେ।)

ମନ୍ତ୍ରୀ ଜୟ ମହାରାଜ ନିରଞ୍ଜନ ପ୍ରତାପଙ୍କର।

ସମସ୍ତେ ଜୟ !

(କଟୁଆଳ ଆଗେଇ ଯାଇ ଦର୍ଶକମାନଙ୍କ ସମ୍ମୁଖରେ ଠିଆ ହେଲା। ଘୋଷଣା କରିବା ଭଙ୍ଗୀରେ ନୂତନ ସମ୍ବାଦ ପରିବେଷଣ କଲା।)

କଟୁଆଳ ଆଜି ଠାରୁ ଏ ରାଜ୍ୟର ରାଜା ମହାରାଜ ନିରଞ୍ଜନ ପ୍ରତାପ।

ରାଣୀ ଧୈର୍ଯ୍ୟ ଧରନ୍ତୁ। ସେ ଆପଣମାନଙ୍କୁ ବାଣୀ ଦେବେ।

ମନ୍ତ୍ରୀ ବାଣୀ ଛାମୁଁ !

ସମସ୍ତେ ଛାମୁଁ ବାଣୀ !

(କିନ୍ତୁ ନିରଞ୍ଜନ ! ସିଂହାସନରେ ବସିବା ପର ଠାରୁ, ତା'କୁ ପୋଷାକ ପିନ୍ଧେଇ ଦେବା, ମୁକୁଟ ବାନ୍ଧି ଦେବା, ଏଇ ସବୁ ପ୍ରକ୍ରିୟା ଭିତରେ ସେ ଯେମିତି ଆସ୍ତେ ଆସ୍ତେ ସାଧାରଣ ମଉଜିଆ ଲୋକରୁ ଏକ ରାଜାରେ ପରିଣତ ହେଉଥିଲା। ଏକ ରାଜକୀୟ ଗମ୍ଭୀରତା ତା' ମୁହଁରୁ ସେଇ ଚିର ପରିଚିତ ହସ ଟିକକ କାଢ଼ି ନେଇଥିଲା। ସେ ସିଂହାସନରୁ ଉଠି ଠିଆ ହେଲା। ସମସ୍ତେ ଉଦ୍‌ଗ୍ରୀବ ହୋଇ ତା' କଥା ଶୁଣିବା ପାଇଁ ଅନେଇ ରହିଲେ।)

ନିରଞ୍ଜନ ରାଜା ହିସାବରେ ସିଂହାସନରୁ ସିଂହାସନ ପାଇଁ ମୋର ବାଣୀ !

କଟୁଆଳ ଶୁଣ, ଶୁଣ, ମନ କର୍ଣ୍ଣ ଦେଇ ଶୁଣ।

ନିରଞ୍ଜନ ମଣିଷମୁହାଁମାନଙ୍କୁ ନେଇ ରାଜ୍ୟ ଶାସନ ହୋଇପାରେନା। ଦୈବାତ ତମେମାନେ ମଣିଷମୁହାଁ ହୋଇଯାଇଚ। ତେଣୁ ରାଜା ହିସାବରେ ମୋର ତୁମ ସମସ୍ତଙ୍କୁ ଆଦେଶ, ଆଜି ଠାରୁ ଶାସନର ସୁବିଧା ପାଇଁ ସମସ୍ତେ ଗୋଟାଏ ଗୋଟାଏ ଓଟମୁଖା ପିନ୍ଧିବେ।

(ସମସ୍ତେ ଯେମିତି ଆକାଶରୁ ପଡ଼ିଲେ। ଇଏ କ'ଣ ଶୁଣୁଚନ୍ତି ସେମାନେ ! ଏତେ କଷ୍ଟ କରି ଯାହାକୁ ରାଜା କଲେ, ସେ ଫେର୍ ଶେଷକୁ ଏଇୟା କହିଲା ? ନିଜର ଦୁଃଖକୁ ଆଉ ଚାପି ରଖି ପାରିଲେ ନାହିଁ। ନିଜ ନିଜ ଭିତରେ ଚାପା ଗଳାରେ ଗୁଞ୍ଜରି ଉଠିଲେ-)

ସମସ୍ତେ (ସମସ୍ତଙ୍କୁ) ଓଟ ମୁଖା ! ଓଟ ମୁଖା !

ରାଣୀ ଓଟ ମୁଖା !

ନିରଞ୍ଜନ ଏବଂ ରାଣୀ ସେଇ କଣ୍ଟେଇ ହେଇ ରହିବେ। ତାଙ୍କ ନାଁ ହବ ପୁତ୍ତଳିକା !

(ଦୁଃଖରେ, ଲାଜରେ, ଅପମାନରେ ରାଣୀଙ୍କର ମୁଣ୍ଡ ତଳକୁ ଝୁଙ୍କିଗଲା। ସେ ଆଉ ମୁଣ୍ଡ ଟେକି କାହାକୁ ଚାହିଁ ପାରୁନଥିଲେ। ତେଣୁ ସେ ନିଜ ମନକୁ ମନ କହିଲା ଭଳି କହିଲେ)

ରାଣୀ ପୁତ୍ତଳିକା ! (ଦୁଃଖରେ ପୁ...ପୁତ୍ତଳିକା)

ନିରଞ୍ଜନ ଗୁମ୍ଫାରେ ରହିଥିବା ସେଇ ତିନିଜଣ ବିଜ୍ଞ ବ୍ୟକ୍ତିଙ୍କ ମସ୍ତକର ମୂଲ୍ୟ ପ୍ରତ୍ୟେକ ତିରିଶ ହଜାର ସ୍ୱର୍ଣ୍ଣମୁଦ୍ରା, ଜୀବତ କିମ୍ବା ମୃତ। ନୂଆ ଗୀତ ନୁହେଁ। ସେଇ ପୁରୁଣା ଜାତୀୟ ସଙ୍ଗୀତ ଦରବାରରେ ବୋଲାଯିବ। କିନ୍ତୁ ଭଣିତାରେ କହେ ରାଜା ସୁର ନ ହୋଇ, କହେ ରାଜା ନିର ହେବ। ମୋର ଆଦେଶ ବର୍ତ୍ତମାନ ଜାତୀୟ ସଙ୍ଗୀତ ବୋଲାଯାଉ।

(ସମସ୍ତେ ସେଇ ପୂର୍ବ ପରି ଆଣ୍ଠେଇ ପଡ଼ିଲେ। ରାଣୀ କଣ୍ଟେଇର ଆବରଣ ଭିତରକୁ ଫେରିଗଲେ। ସେମାନେ ଜାତୀୟ ସଙ୍ଗୀତ ବୋଲିବା ଆରମ୍ଭ କଲେ।)

(ଜାତୀୟ ସଙ୍ଗୀତ ସମସ୍ତେ ଏକତ୍ର ବୋଲିବେ)

ଓଟ ପରି ଜୀବ ନାହିଁରେ ଭାଇ ଶାନ୍ତି ତୁ ପାଇବୁ ଯା' ଓଟ ହୋଇ
ପିଠିରେ କୁଜଟା କି ମନୋହର ତୋ ନିରୀହ ଆଖି ଭାରି ସୁନ୍ଦର
କଣ୍ଟା ଝଣ୍ଟା ସିଝୁ ଯା ଖାଇଯା ତାତିଲା ବାଲିରେ ଯା ଶୋଇଯା
ଓଟ ପରି ଜୀବ ନାହିଁରେ ଭାଇ କହେ ରାଜା ନିର ଯା' ଓଟ ହୋଇ।

(ଯେତେବେଳେ ଜାତୀୟ ସଙ୍ଗୀତ ବୋଲା ଯାଉଥିଲା, ସେତେବେଳେ ଦେବୀ କ'ଣ କରୁଥିଲା ? ଏ ସମୁଦାୟ ଗପରେ ସେଇ ତ ହେଇଚି ଯାଦୁକରୀ। ସେ ନିର ପାଖରେ, ସିଂହାସନ ପାଖରେ ଠିଆ ହୋଇଥିଲା। ଜାତୀୟ ସଙ୍ଗୀତ ଆରମ୍ଭ ହେବା ମାତ୍ରେ ସେ ସିଂହାସନ ପାଖରୁ ଚାଲି ଆସିଲା। ମଞ୍ଚରୁ ଓହ୍ଲେଇ ଆସିଲା ଧୀରେ ଧୀରେ। ସେତେବେଳେ ତା' ମୁହଁଟା ଆଦ୍ୟ ଆଷାଢ଼ର ଆକାଶ ପରି ମେଘାକ୍ରାନ୍ତ ଥିଲା ଯେପରି ସେ କୌଣସି ମୁହୂର୍ତ୍ତରେ ବର୍ଷା ହୋଇପାରେ। ସେ ଜାତୀୟ ସଙ୍ଗୀତ ବୋଲୁଥିବା ଲୋକମାନଙ୍କ ମଝରେ ଧୀରେ ଧୀରେ ଆଗେଇ ଆସିଲା ଦର୍ଶକମାନଙ୍କ ଆଡ଼କୁ, ଦର୍ଶକମାନଙ୍କ ଆଗରେ, ଏମାନଙ୍କୁ ପଛରେ ପକାଇ) (ପୂର୍ବଦୃଶ୍ୟର ରୂପାନ୍ତର)

ଚାଣକ୍ୟ ଅବଶ୍ୟ ଆସିବ, ନିଶ୍ଚୟ ଆସିବ। ଏପରି ଅପରିଣାମଦର୍ଶୀ ରାଜାଙ୍କୁ ସିଂହାସନ ଚ୍ୟୁତ କରିବାକୁ ପଡ଼ିବ।

ଦ୍ରୌପଦୀ କାହିଁକି ?

ଚାଣକ୍ୟ ସିଂହାସନରେ ବସିବା ମାତ୍ରେ ଯିଏ ନିଜକୁ ପ୍ରଜାଙ୍କ ସେବକ ନୁହେଁ, ବରଂ ନିଜକୁ ପ୍ରଭୁ ବୋଲି ମନେ କରେ, ସେପରି ରାଜାଙ୍କୁ ତୁରନ୍ତ ଗାଦିଚ୍ୟୁତ କରିବା ଉଚିତ।

ଦ୍ରୌପଦୀ କିନ୍ତୁ ନୂତନ ରାଜା, ଯାହାଙ୍କୁ ଆପଣ ସିଂହାସନ ଅର୍ପଣ କରିବେ, ସେ ଯଦି ପୂର୍ବ ରାଜାଙ୍କ ପଦାଙ୍କ ଅନୁସରଣ କରେ ?

ଚାଣକ୍ୟ ତା'ଙ୍କୁ ମଧ୍ୟ ଅପସାରଣ କରିବାକୁ ମୁଁ ଆଦୌ କୁଣ୍ଠାବୋଧ କରିବି ନାହିଁ।

ଦ୍ରୌପଦୀ ଏମିତି କେତେ ଜଣ ଶାସକଙ୍କୁ ଆପଣ ପଦଚ୍ୟୁତ କରିବେ ଆଚାର୍ଯ୍ୟ ?

ଚାଣକ୍ୟ ପ୍ରୟୋଜନ ହେଲେ ଅପରିଣାମଦର୍ଶୀ ସମସ୍ତ ଶାସକଙ୍କୁ ମୁଁ ପଦଚ୍ୟୁତ କରିବାକୁ ପ୍ରସ୍ତୁତ ଅଛି।

ଦ୍ରୌପଦୀ ସତେ ନା କ'ଣ ? ତା'ହେଲେ ସେଦିନ ଆପଣ ସେମିତି ଜଣେ ପରିବର୍ତ୍ତିତ ରାଜାଙ୍କର ପ୍ରମୋଦ କକ୍ଷରୁ ନିରବରେ ଫେରି ଆସିଥିଲେ କାହିଁକି ?

ଚାଣକ୍ୟ ଏ ଆପଣ କ'ଣ କହୁଛନ୍ତି ? ମୁଁ ଫେରିଆସିଥିଲି ଜଣେ ରାଜାଙ୍କର ପ୍ରମୋଦ କକ୍ଷରୁ ନିରବରେ। କେବେ ? କେଉଁଠାରୁ ? ଅସମ୍ଭବ।

ଦ୍ରୌପଦୀ ଠିକ୍ ଅଛି। ମୁଁ ତା'ହେଲେ ଅତୀତର ସେ ଦୃଶ୍ୟ ମନେ ପକାଇ ଦେଉଛି।

ଘୋଷଣା ନାଟକ : ଅଥଚ ଚାଣକ୍ୟ, ନାଟ୍ୟକାର : ଡ. ରତ୍ନାକର ଚଇନି। ଷଷ୍ଠ ଓ ସପ୍ତମ ଦୃଶ୍ୟ।

## ଦୃଶ୍ୟାନ୍ତର

(ନନ୍ଦ ରାଜାଙ୍କର ସେଇ ପ୍ରମୋଦ ଭବନ। ରାଜା ନନ୍ଦ ମଦ୍ୟପାନ ଓ ନୃତ୍ୟଗୀତରେ ବୁଡ଼ି ରହିଥିଲେ। ଏହି ସମୟରେ ଭୀତତ୍ରସ୍ତ ଅବସ୍ଥାରେ ଦୂତ ସେଠାରେ ଉପସ୍ଥିତ ହେଲା।)

ଦୂତ ମହାରାଜ !

ନନ୍ଦ ଆଃ !...ଭରିଦିଅ ପ୍ରିୟେ ମଦିରା ପାତ୍ର    ରାତ୍ରି ଆସୁଚି ପାହି
ଭୁଲିଯାଏ ମୁହିଁ ଜଗତର ଗ୍ଲାନି    ଏ ଲଗ୍ନ ମିଳିବ କାହିଁ ?

ଦୂତ ମହାରାଜ ! ସର୍ବନାଶ ଉପସ୍ଥିତ।

ନନ୍ଦ ଓଃ ! ବାରମ୍ବାର ରଙ୍ଗରସରେ ବାଧା ! ...କି ସମ୍ବାଦ ?

ଦୂତ ସାରା ମଗଧ ଅଚାନକ ବିଦ୍ରୋହ ଘୋଷଣା କରିଛି।

ନନ୍ଦ ଆଃ... ମଗଧର ସୈନ୍ୟମାନେ କ'ଣ ଶୋଇଛନ୍ତି ? ଯାଅ...ଯାଅ ସେନାପତିଙ୍କୁ ଏ ସମ୍ବାଦ ଦିଅ। ଯେକୌଣସି ମତେ ସେ ଏ ବିଦ୍ରୋହ ଦମନ କରନ୍ତୁ।

ଦୂତ ମହାରାଜ ! ସୈନ୍ୟମାନେ ଏବେ ଗୃହବନ୍ଦୀ।

ନନ୍ଦ ଆଃ ! କହିଦିଅ ଆଉ କିଛି ସମୟ ସେମାନେ ସେମିତି ବନ୍ଦୀ ହୋଇ ଥାଆନ୍ତୁ। ଏ ମଧୁର ମୁହୂର୍ତ୍ତ ଅତିକ୍ରାନ୍ତ ହେଲା ପରେ...

ଦୂତ ବିଦ୍ରୋହୀ ଲୋକେ କାରଗାରର ଦ୍ୱାର ଭାଙ୍ଗି ଦେଇଛନ୍ତି। ବନ୍ଦୀମାନେ ଏବେ ମୁକ୍ତ। (ଦୂରରୁ କୋଳାହଳ ଶୁଣାଗଲା)

ନନ୍ଦ ଏଁ !...ଏ ସମ୍ବାଦ ଆଗରୁ ଜଣାଇ ନ ଥିଲ କାହିଁକି ?

ଦୂତ ମଣିମା ବାରଣ କରିଥିଲେ।

ନନ୍ଦ ଓଃ, ମୋ ବିରୋଧରେ ଚକ୍ରାନ୍ତ।
(ଏଇ ସମୟରେ ଅସଂଖ୍ୟ ଲୋକ, ବନ୍ଦୀଶାଳାର ବନ୍ଦୀମାନେ ପଶି ଆସିଲେ ସେଇଠିକି। ଦୂତ ପଳାୟନ କଲା। ନନ୍ଦ ସ୍ତବ୍ଧ ହୋଇ ଠିଆ ହୋଇପଡ଼ିଲେ।)

ସମସ୍ତେ ଆମେ ଆସିଚୁ...ରୁଦ୍ଧ କାରାଗାର ଭାଙ୍ଗି ଆମେ ଆସିଚୁ।

ନନ୍ଦ ତମେ? କିଏ ତମେମାନେ?

ସମସ୍ତେ ଆମେ? ହାଃ...ହାଃ...ହାଃ

ନନ୍ଦ କିଏ? ଶକଟାୟନ? ଚଣକ? ମୌର୍ଯ୍ୟ? ଆଚ୍ଛା, ମୁଁ ତୁମମାନଙ୍କୁ କ୍ଷମା ଦେଲି। ଆଜିଠାରୁ ତୁମେମାନେ ମୁକ୍ତ।

ସମସ୍ତେ କ୍ଷମା? ହାଃ...ହାଃ...ହାଃ...

ନନ୍ଦ ଶୁଣ, ଆଉ ତୁମକୁ କେହି କାରାଗାରରେ ନିକ୍ଷେପ କରିବେ ନାହିଁ।

ସମସ୍ତେ ଆମେ ସ୍ୱାଧୀନ ହୋଇ ସାରିଚୁ।

ନନ୍ଦ ତା'ହେଲେ?

ସମସ୍ତେ ପ୍ରତିଶୋଧ!...ହାଃ...ହାଃ...ହାଃ....

(ଖୁବ୍ ଜୋରରେ ହସି ଉଠିଲେ ସମସ୍ତେ ଏବଂ ଆଗେଇ ଗଲେ ନନ୍ଦ ପାଖକୁ। ଚାରିଆଡୁ ନନ୍ଦଙ୍କୁ ଘେରି ଗଲେ। ଗୋଟାଏ କରୁଣ ଆର୍ତ୍ତନାଦ ସହ ବୁକୁଫଟା ଆନନ୍ଦର କକ୍‌ଟେଲ ସୃଷ୍ଟି ହେଲା ସେଇଠି। ଆଲୋକ କ୍ରମଶଃ ଲିଭି ଲିଭି ଆସିଲା। ପୁଣି ଆଲୁଅ ଜଳିଲା। ଘେରି ଯାଇଥିବା ଲୋକମାନେ ଘୁଞ୍ଚି ଯାଇଥିଲେ ସେତେବେଳକୁ। ସମୟ ବଦଳି ଯାଇଥିଲା। ଏବେ ଚନ୍ଦ୍ରଗୁପ୍ତ ବସିଥିଲେ ସିଂହାସନରେ। ହୁଏତ କେତେଦିନ ପରେ ନଗରର ଏକ ଆନନ୍ଦମୁଖର ଦିନ।)

ସମସ୍ତେ ଜୟ ସମ୍ରାଟ ଚନ୍ଦ୍ରଗୁପ୍ତଙ୍କର ଜୟ! ଜୟ ସମ୍ରାଟ ଚନ୍ଦ୍ରଗୁପ୍ତଙ୍କର ଜୟ!!

(ନର୍ତ୍ତକୀ ନୃତ୍ୟ କରୁଥିଲେ। ମାଳବିକା ଆସି ଆସନ ଗ୍ରହଣ କରିଥିଲେ। ସମସ୍ତେ ନୃତ୍ୟ ଉପଭୋଗ କରୁଥିବାବେଳେ ପଶି ଆସିଲେ ଚାଣକ୍ୟ। ଅଦୂରରେ ଥିବା ରକ୍ଷୀଙ୍କ ଠାରୁ ସେ ବାଧା ପାଇଥିଲେ। ମାତ୍ର ସେମାନଙ୍କୁ ଅପସାରିତ କରି କ୍ରୁଦ୍ଧ ଚାଣକ୍ୟ ଆଗେଇ ଆସିଲେ ସିଂହାସନ ଆଡ଼କୁ। ଚନ୍ଦ୍ରଗୁପ୍ତ ଠିଆ ହୋଇ ପଡ଼ିଲେ ଏବଂ ଜନସାଧାରଣଙ୍କୁ ଓ ନର୍ତ୍ତକୀଙ୍କୁ ଅପସରି ଯିବାକୁ କହିଲେ। ଅଥଚ ମାଳବିକା କିପରି ଏକ ଅବଜ୍ଞାସୂଚକ ଭଙ୍ଗୀରେ ହିଁ ଚାଣକ୍ୟଙ୍କ ଠାରୁ ଦୃଷ୍ଟି ଫେରାଇ ନେଲେ।)

ଚାଣକ୍ୟ ଚନ୍ଦ୍ରଗୁପ୍ତ!!

ଚନ୍ଦ୍ରଗୁପ୍ତ (ନିରବ)

ଚାଣକ୍ୟ ରାଜ୍ୟ ଶାସନର ପ୍ରଥମ ବାର୍ଷିକ ଉତ୍ସବ ବେଶ୍ ଆଡ଼ମ୍ବର ସହିତ ପାଳିତ ହେଉଛି। ଅତିଥି ଅଭ୍ୟାଗତମାନଙ୍କୁ ସ୍ୱାଗତ ଜଣାଇବା ପାଇଁ ରାଜପଥ ଧାରରେ କୃତ୍ରିମ ଝରଣା ସବୁ ନିର୍ମାଣ କରାଯାଇଛି।

ଚନ୍ଦ୍ରଗୁପ୍ତ ତାହା ତ ରାଷ୍ଟ୍ରର ମର୍ଯ୍ୟାଦା ବଢ଼ାଏ, ଗୁରୁଦେବ!

ଚାଣକ୍ୟ କିନ୍ତୁ କୃଷକର କୃଷିକ୍ଷେତ୍ରରେ ଟୋପାଏ ବୋଲି ପାଣି ନାହିଁ। ଅଟ୍ଟାଳିକା, ଦେବାଳୟ, ଅତିଥିଶାଳା, ସବୁ ଆଲୋକମାଳାରେ ସଜ୍ଜିତ ଅଥଚ ଜନପଦର କୁଟୀରମାନଙ୍କରେ ନିରନ୍ଧ୍ର ଅନ୍ଧକାର। କେଉଁ ଅହଙ୍କାରରେ ରାଜତ୍ୱର ପ୍ରଥମ ସମ୍ବତ୍ସରଟି ପାଳନ କରୁଛ?

ଚନ୍ଦ୍ରଗୁପ୍ତ ଗୁରୁଦେବ! ପ୍ରଜାମାନଙ୍କ ସୁଖ ସୁବିଧା ଦେଖିବା ପାଇଁ ଉପଯୁକ୍ତ କର୍ମଚାରୀ ନିଯୁକ୍ତ କରାଯାଇଛି। ରାକ୍ଷସଙ୍କ ଭଳି ସୁଯୋଗ୍ୟ ମନ୍ତ୍ରୀଙ୍କ ହାତରେ ଶାସନ ଭାର ସମର୍ପଣ କରାଯାଇଛି।

ଚାଣକ୍ୟ କିଛି କର୍ମଚାରୀ ଆଉ ମନ୍ତ୍ରୀଙ୍କ ଉପରେ ନିର୍ଭର କରି ସ୍ୱୟଂ ପ୍ରଧାନ ଶାସନକର୍ତ୍ତା ରାଣୀଙ୍କ ସହିତ ଆନନ୍ଦ ଉତ୍ସବରେ ପ୍ରମତ୍ତ। ତା'ହେଲେ ପରିବର୍ତ୍ତନଟା ଥିଲା ଖାଲି ନାମର ?...ବଂଶର ପରିବର୍ତ୍ତନ।

ମାଳବିକା (ହଠାତ୍ ଠିଆ ହୋଇ) ପରିବର୍ତ୍ତନର ସ୍ୱରୂପ କ'ଣ ମହାରାଜ ଚନ୍ଦ୍ରଗୁପ୍ତଙ୍କୁ ଦେଖାଇବାକୁ ପଡ଼ିବ ?

ଚନ୍ଦ୍ରଗୁପ୍ତ ମହାରାଣୀ ମାଳବିକା !

ମାଳବିକା ଆଉ ପୁଣି କାରଣ ଜଣାଇବାକୁ ପଡ଼ିବ କୁସୁମପୁରର ଅଧିବାସୀ ବ୍ରାହ୍ମଣ ଚାଣକ୍ୟଙ୍କୁ ?

ଚାଣକ୍ୟ କ'ଣ କହିବାକୁ ଚାହାନ୍ତି ମହାରାଣୀ ?

ମାଳବିକା ମୁଁ ଜଣେ ଚାଣକ୍ୟଙ୍କୁ ଜାଣେ, ଯିଏ ତକ୍ଷଶିଳାରେ ଅଧ୍ୟାପକ ଥିଲେ, ଯିଏ ଅର୍ଥଶାସ୍ତ୍ର ରଚନା କରିଥିଲେ ଆଉ ଯିଏ ମଗଧ ବିପ୍ଳବରେ ନେତୃତ୍ୱ ନେଇଥିଲେ।

ଚାଣକ୍ୟ ସେ ଚାଣକ୍ୟ ତ ସମ୍ମୁଖରେ ଦଣ୍ଡାୟମାନ।

ମାଳବିକା ନା, ସେ ଚାଣକ୍ୟ ଆପଣ ନୁହନ୍ତି। ଆପଣ ସେ ହୋଇଥିଲେ, କେବେ ବିନା ଅନୁମତିରେ ଜଣେ ରାଜାଙ୍କର ପ୍ରମୋଦ ଭବନକୁ ପଶି ଆସିନଥାନ୍ତେ।

ଚାଣକ୍ୟ ମହାରାଣୀ ମାଳବିକାଙ୍କର ମନ୍ତବ୍ୟ କ'ଣ ତୁମର ମନ୍ତବ୍ୟ ଚନ୍ଦ୍ରଗୁପ୍ତ ?

ଚନ୍ଦ୍ରଗୁପ୍ତ (ନିରବ)

ମାଳବିକା ହଁ। ଯଦି ଅର୍ଥଶାସ୍ତ୍ର ପ୍ରଣେତା ଚାଣକ୍ୟ ଆଉ ଆପଣ ଏକ ଏବଂ ଅଭିନ୍ନ ବ୍ୟକ୍ତି ହୋଇଥାନ୍ତି...

ଚାଣକ୍ୟ ତା'ହେଲେ ସବୁ ରାଜତ୍ୱ କ'ଣ ସମାନ ? ସବୁ ଶାସନ....ସବୁ ଶାସନକର୍ତ୍ତା...

ମାଳବିକା ଏବଂ ସବୁ ମହାରାଣୀ...

ଚାଣକ୍ୟ ମହାରାଣୀ... ! !

ମାଳବିକା ଆପଣଙ୍କ ଅର୍ଥଶାସ୍ତ୍ର ଅନୁସାରେ ପ୍ରତ୍ୟେକ ପଦବୀର କିଛି ନା କିଛି ଅଧିକାର ଆଉ କ୍ଷମତା ଅଛି।

ଚାଣକ୍ୟ ଅଧିକାର.... ? କ୍ଷମତା.... ?

ମାଳବିକା ମହାରାଣୀ ମାଳବିକାଙ୍କର ମଧ ଅଧିକାର ଅଛି ପ୍ରମୋଦ ଭବନର ଅନୁପ୍ରବେଶକାରୀଙ୍କୁ ବାହାରକୁ ଚାଲିଯିବାର ନିର୍ଦ୍ଦେଶ ଦେବା।

ଚାଣକ୍ୟ ତା' ମାନେ...

ମାଳବିକା ଏବଂ କ୍ଷମତା ଅଛି ପ୍ରତ୍ୟେକ ପ୍ରଜାକୁ ତାଙ୍କ ନିଜ ସୀମା ଭିତରେ ରହିବାକୁ ନିର୍ଦ୍ଦେଶ ଦେବା।

ଚାଣକ୍ୟ ତା'ହେଲେ ଚାଣକ୍ୟ ବି ଏକ ଭ୍ରାନ୍ତିର ଶରବ୍ୟ...

ମାଳବିକା ସୀମା ବାହାରକୁ ପାଦ ଦେଲା ମାତ୍ରେ ଚାଣକ୍ୟ ବି ନିରାପଦ ନୁହଁନ୍ତି। ଯଦି ଏ କଥା ଆପଣଙ୍କ ଅର୍ଥଶାସ୍ତ୍ରରେ ଲେଖିନଥାନ୍ତି, ମାଳବିକାର ଏ ଉକ୍ତିଟି ଉଦ୍ଧାର କରିଦେବେ।

ଚାଣକ୍ୟ ନା ! ପୁଣି ଖୋଜିବାକୁ ପଡ଼ିବ...। ପୁଣି ଯିବାକୁ ପଡ଼ିବ ତକ୍ଷଶିଳାରୁ ବୈଶାଳୀ, ବୈଶାଳୀରୁ କୁରୁକ୍ଷେତ୍ର, କୁରୁକ୍ଷେତ୍ରରୁ....(ଚାଲି ଯାଉଥିଲେ)

ମାଳବିକା ମୁଁ କହୁଥିଲି, ଆପଣଙ୍କର ମନେଥିବ, ମୁଁ କାହାରି ପ୍ରତିନିଧି ନୁହେଁ, ବରଂ ପ୍ରତ୍ୟେକ ଉତ୍ତରର ପ୍ରତ୍ୟୁତ୍ତର।

ଚାଣକ୍ୟ ହଁ, ସେଇଥିପାଇଁ.....ନା ..... ନା (ଚାଲିଗଲେ ସେ)

ଚନ୍ଦ୍ରଗୁପ୍ତ ଇଏ ତୁମେ କ'ଣ କଲ ? ଗୁରୁଦେବ ଚାଣକ୍ୟଙ୍କୁ ଅପମାନିତ କଲ ?

ମାଳବିକା ଅପମାନ କରିନି। ତାଙ୍କ ପ୍ରାପ୍ୟ ମୁଁ ତାଙ୍କୁ ପ୍ରତିଶୋଧ କରିଦେଇଚି।

ଚନ୍ଦ୍ରଗୁପ୍ତ ମହାରାଣୀ !

ମାଳବିକା (ହସି ଉଠିଲା। ଆଲୋକ କ୍ରମେ ନିଷ୍ପ୍ରଭ ହୋଇ ଲିଭିଗଲା। ଚନ୍ଦ୍ରଗୁପ୍ତ ଏକ କିଂକର୍ତ୍ତବ୍ୟବିମୂଢ଼ ଚରିତ୍ର ଭଳି ଠିଆ ହୋଇଥିଲେ। ତାଙ୍କ କଳ୍ପନାର ଦୃଷ୍ଟିଶକ୍ତି ଯେତେ ଦୂର ପାଉଥିଲା, ସେ ଦେଖି ପାରୁଥିଲେ, ଅଭିମାନୀ ଚାଣକ୍ୟ ଚାଲିଛନ୍ତି।)

## ସାତ

(କୁସୁମପୁର ଜନପଦ ଧାର ନିକଟରେ ସେଇ ମଞ୍ଚ। ଚାଣକ୍ୟ ଚାଲିଯିବା ମୁହୂର୍ତ୍ତରେ ସେଇଠି ପହଞ୍ଚିଥିଲେ। ବଡ଼ କରୁଣ ନୟନରେ ସେ ଚାହିଁଲେ ନିଜର ପ୍ରିୟ ଜନ୍ମସ୍ଥାନ ଆଡ଼କୁ। ତା'ପରେ ଚାଲିଯିବାକୁ ଉଦ୍ୟତ ହେଲେ।)

ଲୋକ କୁଆଡ଼େ ଚାଲିଯାଉଛନ୍ତି ନିଶ୍ଚୟ ?

ଚାଣକ୍ୟ ହଁ।

ଲୋକ ମୁଁ ମୋ ଆଖିକୁ ବିଶ୍ୱାସ କରିପାରୁନି। ଆପଣ ସେଇ ଚାଣକ୍ୟ ତ ?

ଚାଣକ୍ୟ ଅନେକ ଉତ୍‌ଥାନ ପତନ, ଅନେକ ପ୍ରମତ୍ତ ଅଭ୍ୟୁଦୟ ପରେ ଚାଣକ୍ୟ ଆଜି କ୍ଳାନ୍ତ।

ଲୋକ କ'ଣ ବିଶ୍ରାମ ନେବେ ? ତେବେ ସେଇଠି ଟିକେ ବସି ପଡ଼ନ୍ତୁ। ସେଇ ଧୂଳିରେ...

ଚାଣକ୍ୟ ଏଇ ଧୂଳିରେ ?

ଲୋକ ସେ ଆଉ କାହା ପାଇଁ ଧୂଳି ହୋଇପାରେ; ଆପଣଙ୍କ ପାଇଁ ପବିତ୍ର ଗଙ୍ଗା ବାଲି। ଆପଣଙ୍କ ପାଦ ବାଜି ଦିନେ ତା' ପାଇଁ ଏ ମାଟି ତୀର୍ଥକ୍ଷେତ୍ର ହୋଇଥିଲା। ଆଜି ତା'ର ଲହୁ-ଲୁହରେ ଏ ମାଟି ଆପଣଙ୍କ ପାଇଁ...

ଚାଣକ୍ୟ ଏ ମୁହୂର୍ତ୍ତରେ କାହା କଥା ସ୍ମରଣ କରାଇ ଦେଉଚ ?

ଲୋକ ସୁହାସିନୀ।

ଚାଣକ୍ୟ ସୁହାସିନୀ ! (ଡାକିବା ଭଳି ସ୍ୱରରେ) ସୁହାସିନୀ !

ଲୋକ ନିଅନ୍ତୁ, ସେଇ ଧୂଳି ଟିକିଏ ମୁଣ୍ଡରେ ମାରନ୍ତୁ। ଅନେକ ବିପ୍ଳବ କରିଛନ୍ତି। ଅନେକ ବିଜୟ ହାସଲ କରିଛନ୍ତି। କିନ୍ତୁ ସେଇ ଧୂଳି ଠାରୁ ବଡ଼ ବିଜୟ ଟୀକା ପାଇବେନି କୋଉଠୁ ?

ଚାଣକ୍ୟ (ବସିପଡ଼ି) ସୁହାସିନୀ ! (ଧୂଳିକୁ ଆଞ୍ଜୁଳା କରି ଦୁଇ ହାତରେ ତୋଳି ଧରି) ଚାଣକ୍ୟ ତୁମ ନିକଟରେ ଏକ ପରାଜିତ ନାୟକ। ତୁମେ ଚାଲିଯାଇ.... (ଅସ୍ଫୁଟ ବେଦନାରେ ସେ ମ୍ରିୟମାଣ ହୋଇ ଉଠିଲେ। ଆଖି ସଜଳ ହୋଇଗଲା।)

ଲୋକ ବାସ୍, ଏଥର କାମ ଶେଷ। ଜଟାୟୁର ଦାୟିତ୍ୱ ସରିଗଲା। ତୀର୍ଥକାକ ଭଳି ତୀର୍ଥଭୂମିକୁ ଆଉ ଜଗିବାକୁ ପଡ଼ିବ ନାହିଁ।

ଚାଣକ୍ୟ ସୁହାସିନୀ ! (ତାଙ୍କ ଧ୍ୱନିର ପ୍ରତିଧ୍ୱନି ତୋଳୁଥିଲେ ଗଛପତ୍ର, ପାହାଡ଼। ତା'ପରେ ଏକ ଲକ୍ଷ୍ୟହରା ପଥିକ ଭଳି ଚାଣକ୍ୟ ଆଗେଇବାକୁ ଲାଗିଲେ।)

ଲୋକ — ବିଦାୟ ଚାଣକ୍ୟ! ବିଦାୟ!!

ଚାଣକ୍ୟ — ସବୁ ଶେଷ ହୋଇଗଲା। ସବୁ ଉତ୍କଣ୍ଠାର ଅପମୃତ୍ୟୁ ଘଟିଲା। ଏଣିକି କେଉଁଠିକି ଯିବୁ ଚାଣକ୍ୟ? ନୂତନ ଶାସନ ପଦ୍ଧତି, ନୂତନ କୂଟନୀତି, ନୂତନ ରାଜନୀତିର ନିୟମ ପ୍ରଣୟନ କରିବାକୁ? ନୂତନ ସିଂହାସନ, ନୂତନ ମୁକୁଟର ସନ୍ଧାନ କରିବାକୁ? ତେବେ ଆଗେଇ ଚାଲ ଚାଣକ୍ୟ..ଚରୈବେତି...ଚରୈବେତି... (ଆଲୋକ ନିଷ୍ପ୍ରଭ ହୋଇ ଆସିଲା। ଅନ୍ତରାଳରୁ ପ୍ରତିଧ୍ୱନିତ ହେଲା ଚାଣକ୍ୟଙ୍କର ଶ୍ଳୋକାବଳୀ, ଅର୍ଥଶାସ୍ତ୍ରର ନିୟମାବଳୀ। ଇତିମଧ୍ୟରେ ବହୁ ଯୁଗ ବହୁ କାଳ ଅତିକ୍ରାନ୍ତ କରିଗଲା। ଆଲୋକ ସ୍ପଷ୍ଟ ହେବା ବେଳକୁ ଦେଖାଗଲା ଚାଣକ୍ୟ ଚାଲିଛନ୍ତି।)

ସାମ୍ବାଦିକ — ଟିକିଏ ଶୁଣନ୍ତୁ...

ଚାଣକ୍ୟ — କୁହ।

ସାମ୍ବାଦିକ — ଅନେକ ଦିନ ଧରି, କେଜାଣି କେତେ ଶତାବ୍ଦୀ ପାରି ହୋଇଯିବଣି, କ'ଣ ଖୋଜୁଛନ୍ତି ଆପଣ?

ଚାଣକ୍ୟ — ଏ ଦେଶ ପାଇଁ ଜଣେ ଆଦର୍ଶ ଶାସନକର୍ତ୍ତା, ଯାହା ପାଇଲେ ସାଧାରଣ ଲୋକେ ଖୁସି ହେବେ, ଆନନ୍ଦରେ ଦିନ ଯାପନ କରିବେ।

ସାମ୍ବାଦିକ — ମୁଁ ଶୁଣିଥିଲି, ଆପଣ ଜଣେ ଖୁବ୍ ବିଜ୍ଞ ଲୋକ। କିନ୍ତୁ ଯାହା ଦେଖୁଚି...ଶୁଣନ୍ତୁ। ସତ୍‌ଅସତ୍‌ର ସୀମାରେଖା କିଛି ନାହିଁ। ଯେତେବେଳେ ପର୍ଯ୍ୟନ୍ତ ଅସତ୍ କାମ କରିବାକୁ ସୁଯୋଗ ମିଳିନାହିଁ, ସେତେବେଳ ଯାଏ ଲୋକ ସତ୍-

ଚାଣକ୍ୟ — ତଥାପି ଏ ଦେଶ...ଏ ଜାତି...

ସାମ୍ବାଦିକ — ବୁଝିଲେ, ଆପଣ ଅର୍ଥନୀତି ରାଜନୀତି କଥା ଲେଖିଲେ କ'ଣ ହେବ? ଲୋକନୀତି କଥା ଲେଖି ନାହାନ୍ତି। ଯାଆନ୍ତୁ, ଆପଣ ଆପଣଙ୍କ ଶାସ୍ତ୍ର ଭିତରକୁ ଫେରି ଯାଆନ୍ତୁ। ସେ କଥା ନ ଲେଖିବା ପର୍ଯ୍ୟନ୍ତ ଆପଣଙ୍କ ଶାସ୍ତ୍ର ଏ ଦେଶର ସଂଗ୍ରହାଳୟରେ ପ୍ରଦର୍ଶନୀର ବସ୍ତୁ ହେଉ।

ଚାଣକ୍ୟ — ଫେରିଯିବ ଚାଣକ୍ୟ?....ହଁ, ସେ ଫେରିଯିବ.... (ମଞ୍ଚ ଅନ୍ଧାର ହେଲା)

## ପରବର୍ତ୍ତୀ ଦୃଶ୍ୟ

ଚାଣକ୍ୟ — ସେଦିନର ସମୟ ଓ ପରିସ୍ଥିତି ବୋଧହୁଏ ମୋତେ ବାଧ୍ୟ କରିଥିଲା । ତଥାପି ଏକଥା ନିଃସଙ୍କୋଚରେ ସ୍ୱୀକାର କରିବି ଯେ - ସେଦିନ ମୋର ଫେରି ଆସିବା ହୁଏତ ଉଚିତ ନଥିଲା ।

ଦ୍ରୌପଦୀ — ଆପଣ ଉଚିତ କଥା କହିଛନ୍ତି ଆଚାର୍ଯ୍ୟ । ସମ୍ଭବତଃ ପରିସ୍ଥିତି ବେଳେବେଳେ ଆମକୁ ନିଷ୍କ୍ରିୟ କରିଦିଏ, ଉଚିତ ନିଷ୍ପତ୍ତି ନେବାରୁ ବଂଚିତ ହେବାକୁ ବାଧ୍ୟ କରିଥାଏ । ସେଇ ଚିନ୍ତା ଆଜି ମୋତେ ମଧ୍ୟ ବ୍ୟଥିତ କରୁଛି ।

ଚାଣକ୍ୟ — କାହିଁକି ଆପଣ ବ୍ୟଥିତ ? କ'ଣ ଆପଣଙ୍କର ଅନ୍ତରର ଅଭିବ୍ୟକ୍ତି ! ପ୍ରକାଶ କରନ୍ତୁ ମାତା ।

ଦ୍ରୌପଦୀ — ଦୁଃଶାସନ ଆଉ ଦୁର୍ଯ୍ୟୋଧନକୁ ହତ୍ୟା କରିବାର ଶପଥ ନେଇ ତାଙ୍କୁ ନିଧନ କରିବାର ପ୍ରୟାସ କରିବା କ'ଣ ମୋର ଉଚିତ ପଦକ୍ଷେପ ଥିଲା ?

ଚାଣକ୍ୟ — ନିଶ୍ଚିତ ଭାବେ ଆପଣ ଉତ୍ତମ କାର୍ଯ୍ୟ କରିସାରିଛନ୍ତି ମାତା । ଏଥିରେ ସଂଶୟର ପ୍ରଶ୍ନ ଉଠୁ ନାହିଁ । ମାତ୍ର...

ଦ୍ରୌପଦୀ ପୁଣି କିନ୍ତୁ କାହିଁକି ଆଚାର୍ଯ୍ୟ ? ଆପଣଙ୍କର ଦ୍ୱିରୁକ୍ତିର କାରଣ କ'ଣ ?

ଚାଣକ୍ୟ ମାତ୍ର ସେଇ ବାହାନାରେ କୁରୁକ୍ଷେତ୍ରର ବିଭୀଷିକା ସୃଷ୍ଟି କରି ଆର୍ଯ୍ୟାବର୍ତ୍ତକୁ ବୀରଶୂନ୍ୟ କରି ରକ୍ତର ହୋରି ଖେଳିବା ହୁଏତ ଉଚିତ ନଥିଲା ।

ଦ୍ରୌପଦୀ ହୁଏତ ବା ସତ୍ୟ । ମାତ୍ର ତାହା ଥିଲା ପ୍ରାଣପ୍ରିୟ ସଖା ବାସୁଦେବଙ୍କ ସିଦ୍ଧାନ୍ତ । ତାକୁ ଗ୍ରହଣ କରିନେବା ବ୍ୟତୀତ ଆଉ କିଛି ଉପାୟ ନ ଥିଲା ।

ଶ୍ରୀକୃଷ୍ଣ (ପ୍ରବେଶୀ) ତୁମେ ଉଚିତ କହିଛ ସଖୀ ! କିନ୍ତୁ ଏ ପୃଥିବୀରେ ଧର୍ମରାଜ୍ୟ ପ୍ରତିଷ୍ଠା କରିବା ହିଁ ମୋର ଏକମାତ୍ର ଉଦ୍ଦେଶ୍ୟ ଥିଲା ।

ଚାଣକ୍ୟ ପ୍ରଣାମ ଗ୍ରହଣ କରନ୍ତୁ ବାସୁଦେବ ! କିନ୍ତୁ ମୁଁ ଯଦି ପଚାରେ ଧର୍ମରାଜ୍ୟ ପ୍ରତିଷ୍ଠା କରିବାର ଆବଶ୍ୟକତା କ'ଣ ବା ଥିଲା ? ପୁଣି ଲକ୍ଷ ଲକ୍ଷ ନିରୀହ ସୈନିକ ମାନଙ୍କୁ ହତ୍ୟାକରି ଧର୍ମରାଜ୍ୟ ପ୍ରତିଷ୍ଠା କରିବା କ'ଣ ସମ୍ଭବ ?

ଶ୍ରୀକୃଷ୍ଣ ପ୍ରକୃତିର କରାଳ ରୂପକୁ କେବେ ଲକ୍ଷ୍ୟ କରିଛନ୍ତି କୌଟଲ୍ୟ ? ଲକ୍ଷ୍ୟ କରିଛନ୍ତି – ଆଗ୍ନେୟଗିରିର ଉଦ୍‌ଗିରଣକୁ, ଝଡ଼ର ଭୟାବହତାକୁ ଅଥବା ବନ୍ୟାର କରାଳ ପ୍ରକୋପକୁ ? ଥରେ ପ୍ରକୃତିର ତାଣ୍ଡବ ଆରମ୍ଭ ହୋଇଗଲା ପରେ କେବଳ ଧ୍ୱଂସର ଭୟାବହତା ବ୍ୟତୀତ ଆଉ କିଛି ଦୃଷ୍ଟିଗୋଚର ହୁଏ ନାହିଁ । ପ୍ରକୃତିର ତାଣ୍ଡବ ଶାନ୍ତ ହେଲାପରେ ସଂଖ୍ୟା ଗଣା ହୁଏ । ଖୋଜାହୁଏ କେତେଗଲେ କେତେ ରହିଲେ ? ପ୍ରକୃତି ସମସ୍ତଙ୍କର ପାପପୁଣ୍ୟର ହିସାବ ରଖି ତାଣ୍ଡବର ସର୍ଜନା କରେନା ଆଚାର୍ଯ୍ୟ । ତାହା ହିଁ ପ୍ରକୃତିର ନିୟମ ।

ଚାଣକ୍ୟ ଆପଣ ଠିକ୍ କହିଛନ୍ତି ବାସୁଦେବ । ପ୍ରାକୃତିକ ତାଣ୍ଡବ ସବୁବେଳେ ଅଦୃଷ୍ଟ ଶକ୍ତିର ଇଙ୍ଗିତରେ ପରିଚାଳିତ ହୁଏ ମାତ୍ର ଯୁଦ୍ଧ ସବୁବେଳେ ମାନବ କୃତ । ତାହା ବିଶ୍ୱଯୁଦ୍ଧ ହେଉ ଅଥବା ମହାଭାରତର ଯୁଦ୍ଧ । ଏମିତି ଶବ୍ଦର ପ୍ରହେଳିକା ସୃଷ୍ଟି କରି ଆପଣ ମୋ' ମୂଳ ପ୍ରଶ୍ନକୁ ଏଡ଼େଇ ଯିବାକୁ ଚାହାଁନ୍ତି ବୋଧ ହୁଏ ?

ଶ୍ରୀକୃଷ୍ଣ (ହସିଲେ) ସେଇଟା କେବଳ ତୁମର ମୂଳ ପ୍ରଶ୍ନ ନୁହେଁ ଆଚାର୍ଯ୍ୟ ସଂସାରର ଅନେକ ମାନବବାଦୀ ମଣିଷର ସେଇ ପ୍ରଶ୍ନ ମୋତେ ଏବେ ବି ଆନ୍ଦୋଳିତ କରୁଛି, ବ୍ୟଥିତ କରୁଛି । ଅଥଚ ସେଦିନର ସେଇ ଉଦ୍ଦେଶ୍ୟ ପଛରେ ଲୁଚି ରହିଥିଲା ଏକ ମହତ୍ତର ପରିକଳ୍ପନା, ଯଦିଓ ପ୍ରକୃତି ତାକୁ ପ୍ରତ୍ୟାଖ୍ୟାନ କରିଦେଇଥିଲା ।

ଦ୍ରୌପଦୀ କ'ଣ ଥିଲା ଆପଣଙ୍କର ପରିକଳ୍ପନା । ପ୍ରକାଶ କରନ୍ତୁ ସଖା ।

ଶ୍ରୀକୃଷ୍ଣ ମୋର ଶାନ୍ତି ପ୍ରତିଷ୍ଠାର ସମସ୍ତ ପ୍ରଚେଷ୍ଟା ବ୍ୟର୍ଥ ହୋଇଥିଲା । ସେ କଥା ଆପଣଙ୍କର ମଧ ଅଜ୍ଞାତ ନଥିବ ।

ଚାଣକ୍ୟ (ହସି) ହାତୀର ଦାନ୍ତ ଭଳି, ଯାହା ଦୃଶ୍ୟମାନ ହୁଏ ସେଥିରେ ସେ ଖାଏନା ଆଉ ଯେଉଁ ଦାନ୍ତରେ ସେ ଖାଏ ତାହା କାହାକୁ ଦେଖା ଯାଏନା ।

ଶ୍ରୀକୃଷ୍ଣ ଏହା ଆପଣ ମାନଙ୍କ ଭଳି ଜଟିଳ ଚିନ୍ତାଶୀଳ ବୁଦ୍ଧିଜୀବୀ ମାନଙ୍କର ଭକ୍ତି ସରଳ ବିଶ୍ୱାସୀ ମଣିଷର ଅନୁଭୂତି କିନ୍ତୁ ଭିନ୍ନ କଥା କହେ ।

ଚାଣକ୍ୟ (ହସି) ଆଚ୍ଛା କହିଲେ ବିଶ୍ୱାସ କରିପାରିଲେ କ'ଣ ସତ୍ୟ ମିଥ୍ୟାରେ ଆଉ ମିଥ୍ୟା ସତ୍ୟରେ ପରିଣତ ହୋଇପାରିବ ? ଯଦି ତାହା ସମ୍ଭବ ତା'ହେଲେ ନିରୀହ ସରଳ ବିଶ୍ୱାସୀ ମଣିଷର ସେଇ ସରଳ ବିଶ୍ୱାସକୁ ପୁଞ୍ଜିକରି ସମାଜରେ ଭଣ୍ଡ, ପ୍ରତାରକ ମାନଙ୍କର ସଂଖ୍ୟା ଆଜି ଆଶାତୀତ ଭାବେ ବଢ଼ି ଚାଲିଛି କାହିଁକି ?

ଦ୍ରୌପଦୀ ସେକଥା ସତ୍ୟ ହୋଇପାରେ କିନ୍ତୁ ତା'ମାନେ ନୁହେଁ ଯେ ବିଶ୍ୱାସର ମୂଲ୍ୟ କିଛି ନାହିଁ । କଥାରେ ଅଛି ବିଶ୍ୱାସେ ମିଳଇ ହରି ତର୍କେ ବହୁ ଦୂର । ସେ ଉକ୍ତି କ'ଣ ଭୁଲ୍ ବୋଲି ଆପଣ କହିପାରିବେ ? କିନ୍ତୁ ମୁଁ ସେ ସତ୍ୟକୁ ପ୍ରାଣପାତ ହେଲେ ମଧ୍ୟ ଅବଜ୍ଞା କରିପାରିବି ନାହିଁ ଆଚାର୍ଯ୍ୟ ।

ଚାଣକ୍ୟ କିନ୍ତୁ ମୋ' ପାଇଁ ସେ ଉକ୍ତି ଅଧିକ ସତ୍ୟ ମନେହୁଏ । ଯାହା ନଦେଖିବ ଦୁଇ ନୟନେ ପରତେ ନଯିବ ଗୁରୁ ବଚନେ ।

ଦ୍ରୌପଦୀ ଦୁଇଟିଯାକ ଉକ୍ତିର ସତ୍ୟତାକୁ ପ୍ରତ୍ୟକ୍ଷ ଭାବରେ ମୁଁ ଉପଲବ୍ଧି କରିଛି ହୃଦୟରେ ଆଉ ସ୍ୱଚକ୍ଷୁରେ ଏକ ସମୟରେ ସମଭାବରେ ।

ଚାଣକ୍ୟ ଅସମ୍ଭବ । କେମିତି ?

ଦ୍ରୌପଦୀ କୁରୁସଭାରେ ପିତାମହ ଭୀଷ୍ମ, ଅସ୍ତ୍ରଗୁରୁ ଦ୍ରୋଣାଚାର୍ଯ୍ୟ ଏବଂ ମୋର ପଞ୍ଚପତି ମୋର ଅତ୍ୟାଚାର ଦେଖି ମଧ୍ୟ ନିରସ୍ତ୍ର ରହିବା ପରେ ମୋ ମନରେ କେବଳ ଜଣଙ୍କର ଛବି ଭାସି ଉଠିଲା ।

ଚାଣକ୍ୟ ସଖା ବାସୁଦେବଙ୍କର ।

ଦ୍ରୌପଦୀ ସେଇ ବିଶ୍ୱାସ ହୃଦୟରେ ଧାରଣ କଲାପରେ ମନର ସବୁ ଉଦ୍‌ବେଳନ ଯେମିତି ଶାନ୍ତ ହୋଇଗଲା । ଅଚାନକ ଯେମିତି କାହାର ସ୍ପର୍ଶରେ ଦେହ ମନ ମୋର ରୋମାଞ୍ଚିତ ହୋଇଉଠିଲା । ଆଖିରୁ ଝରି ଆସିଲା ଅବାରିତ ଅଶ୍ରୁଧାରା । ସାରା ଶରୀରରେ ବେପଥୁ ଅଥଚ ହୃଦୟ କେଉଁ ଅପାର ଆନନ୍ଦରେ ନିମଗ୍ନ ଆଃ-ସେ କି ପରମ ଶାନ୍ତି ପରମ ତୃପ୍ତି । ତାକୁ ଭାଷାରେ ବର୍ଣ୍ଣନା କରିବା ତ ସମ୍ଭବ ନୁହେଁ ଆଚାର୍ଯ୍ୟ । ତା'ପର କଥା ସମସ୍ତେ ଜାଣନ୍ତି । ଆଖିଖୋଲି ଯେବେ ଦେଖିଲି ଦୁଃଶାସନ ଧରାଶାୟୀ ଅଥଚ ମୋ' ଶରୀର ଏକମାତ୍ର ବସ୍ତ୍ର ସେମିତି ଅମଳିନ ରହିଛି । ଏହା କ'ଣ ବିଶ୍ୱାସର ଚମତ୍କାର ନୁହେଁ । ତୁମେ ତ ସବୁ ଜାଣ ଅଥଚ ତୁମେ ନିରବ କାହିଁକି ସଖା ।

ଶ୍ରୀକୃଷ୍ଣ ମନର ଭାବନାକୁ ଭାଷାରେ କହି ବ୍ୟକ୍ତ କରି ହୁଏନା ସଖୀ ଅନୁଭବ କରି ହୁଏ । ଅନୁଭବି ଏକା ପାରେ ଅନୁଭବି ।

ଚାଣକ୍ୟ ସେ ଅନୁଭବ କ'ଣ ଏକା ଆପଣଙ୍କ ସଖୀଙ୍କ ବ୍ୟତୀତ ଆଉ କାହାର ପ୍ରାପ୍ୟ ନୁହେଁ । ନା ଆପଣଙ୍କର ସେଦିନର ସେ ଶକ୍ତି ଆଜି ନିଃଷ୍ପ୍ରଭ ।

ଶ୍ରୀକୃଷ୍ଣ ସମସ୍ତେ । ଯେ ଯାହା ସ୍ଥାନରେ ଅଚଳ ଅଛନ୍ତି, ସ୍ଥିର ଅଛନ୍ତି ଆଚାର୍ଯ୍ୟ । ବଦଳି ଯାଇଛି କେବଳ ଦ୍ରଷ୍ଟାଙ୍କର ଦୃଷ୍ଟି ଆଉ ଦୃଷ୍ଟିକୋଣ ।

ଚାଣକ୍ୟ ସେଥିପାଇଁ ଦାୟୀ କିଏ ?

ଶ୍ରୀକୃଷ୍ଣ ସମସ୍ତେ ! କର୍ତ୍ତା-କର୍ମ ଓ ତା'ର ଫଳାଫଳ । ବିଶେଷ କରି ମହତ ବ୍ୟକ୍ତିମାନଙ୍କର ବଚନ ଆଉ ଆଚରଣରେ ସତ୍ୟ ଅସତ୍ୟର ପ୍ରହେଳିକା । ଆଉ ତା' ଉପରେ କଳିର ପ୍ରଭାବ...

ଦ୍ରୌପଦୀ ସେଥିରୁ କ'ଣ ମୁକ୍ତି ନାହିଁ ?

ଶ୍ରୀକୃଷ୍ଣ ସେଥିପାଇଁ ଧୈର୍ଯ୍ୟର ସହ ପ୍ରତୀକ୍ଷା କରିବାକୁ ପଡ଼ିବ ।

ଚାଣକ୍ୟ (ହସି) କ'ଣ ପୁଣି ଏକ ଯୁଗକୁ ? ଯାହା ପ୍ରକୃତରେ ବାସ୍ତବ ନା ନିଛକ ଏକ କାବ୍ୟିକ କଳ୍ପନା ସେ କଥା କିଏ କହିବ ? ଏବେ ଯଦି ସେଇ ମୂଳ ପ୍ରଶ୍ନକୁ ମୁଁ ଫେରିଯାଇ ପଚାରିବି ଯେ ଆପଣ ନିଜେ ଅନ୍ୟ ଏକ ଯୁଗକୁ ପ୍ରତୀକ୍ଷା ନ କରି ଧର୍ମରାଜ୍ୟ ପ୍ରତିଷ୍ଠା କରିବା ପାଇଁ ମହାଭାରତର ମହାପ୍ରଳୟ ସୃଷ୍ଟି କଲେ କାହିଁକି ?

ଶ୍ରୀକୃଷ୍ଣ ତାହା ପଛରେ ଏକ ମହତ୍ତର ଉଦ୍ଦେଶ୍ୟ ନିହିତ ଥିଲା ।

ଦ୍ରୌପଦୀ କ'ଣ ସେ ଉଦ୍ଦେଶ୍ୟ ସଖା... ?

ଶ୍ରୀକୃଷ୍ଣ ଯୁଦ୍ଧ ଆରମ୍ଭର ବହୁ ପୂର୍ବରୁ କଳି ଆଗମନର ପୂର୍ବାଭାଷ ମୋତେ ମିଳି ସାରିଥିଲା । ତା'ର ପ୍ରବଳ ପରାକ୍ରମ ଏବଂ ବିକୃତ ଉଦଣ୍ଡ ସ୍ୱରୂପକୁ ଦେଖି ମୁଁ ଧର୍ମରାଜ୍ୟ ପ୍ରତିଷ୍ଠା କରିବାର ପ୍ରୟାସ କରିଥିଲି । ଭାବିଥିଲି ପାପୀମାନଙ୍କ ସହିତ ପାପ କର୍ମର ସମୂଳ ଉତ୍ପାଟନ କରିପାରିଲେ ପୃଥିବୀ ପୃଷ୍ଠକୁ ଦ୍ୱାପର ଯୁଗ ପରେ ଏକାଥରେ ସତ୍ୟ ଯୁଗର ଆଗମନ ନିମନ୍ତେ ମୁଁ ପ୍ରକୃଷ୍ଟ କ୍ଷେତ୍ର ପ୍ରସ୍ତୁତ କରିଧାରିଥିବି । ଫଳରେ କଳିର ଆଗମନକୁ ପ୍ରତିହତ କରାଯାଇପାରିବ । ମାତ୍ର ପ୍ରକୃତି ଓ ନିୟତିର ଉଦ୍ଦେଶ୍ୟ ମୋ' ଉଦ୍ୟମକୁ ସମର୍ଥନ କରିପାରିଲା ନାହିଁ । କଳିର ଆଗମନ ଅବଶ୍ୟମ୍ଭାବି ହୋଇଗଲା । ବୋଧହୁଏ ନିୟତି ନିକଟରେ ପୌରୁଷ ହାର ମାନିନେଲା। କଳିର ଆଗମନ ହେଲା ଦ୍ୱିଗୁଣ ଶକ୍ତିରେ। ଆଉ ତା' ପୂର୍ବରୁ ପୃଥିବୀ ପୃଷ୍ଠରୁ ମୋର ବିଦାୟ ନେବାର ଶୁଭ ମୁହୂର୍ତ୍ତ ମଧ୍ୟ ଉପସ୍ଥିତ ହେଲା । ମୁଁ ନିରୁପାୟ ହୋଇପଡ଼ିଲି ।

ଚାଣକ୍ୟ ଆଉ ନିଜେ କଳିର କରାୟତ୍ତ ହେବା ପୂର୍ବରୁ ଆପଣା ହସ୍ତରେ ସ୍ୱବଂଶ ନିଧନ କରି ଶିଆଳି ଲଟାରେ ଦୋଳି ଖେଳିବାକୁ ଜଙ୍ଗଲରେ ପ୍ରବେଶ କଲେ ।

ଦ୍ରୌପଦୀ ସେ ଆଲୋଚନା ବନ୍ଦ କରନ୍ତୁ ଆଚାର୍ଯ୍ୟ ବରଂ କହନ୍ତୁ ପୁନର୍ବାର ଆପଣଙ୍କ ଧରାବତରଣର କାରଣ କ'ଣ ହୋଇପାରେ ?

ଚାଣକ୍ୟ ସେଦିନର ବିଫଳତା ପରେ ଆଜି ମୁଁ ପ୍ରସ୍ତୁତ ହୋଇ ଆସିଛି । ଏବେ ପୁଣି ଜନପଦକୁ ଫେରିବାକୁ ଚାହେଁ ।

ଦ୍ରୌପଦୀ ସେହି ସାମ୍ୟବାଦିକଙ୍କର ଲୋକନୀତିର ଆହ୍ୱାନରେ ବୋଧହୁଏ ଆପଣ ଉଦ୍‌ବୁଦ୍ଧ ହୋଇ ଉଠିଛନ୍ତି ।

ଚାଣକ୍ୟ ଏହା କେବଳ ନିଜେ ଉଦ୍‌ବୁଦ୍ଧ ହେବାର କଥା ନୁହେଁ ମାତା ବରଂ ସମସ୍ତଙ୍କୁ ଉଦ୍‌ବୁଦ୍ଧ କରି ଲୋକାଚାର ଆଉ ଲୋକନୀତିକୁ ନେଇ ସାମାଜିକ ନ୍ୟାୟର ଚେତନା ଜାଗ୍ରତ କରିବାର ସମୟ ଆସିଛି । ଅତଏବ ସମସ୍ତଙ୍କୁ ଉଜ୍ଜୀବିତକରି ସମଗ୍ର ଶାସନ ପ୍ରଣାଳୀ ଏବଂ ସାମାଜିକ ସଚେତନତାକୁ କଳଙ୍କ ମୁକ୍ତ କରିବାକୁ ଚାହେଁ । ଆଉ ସେଥିପାଇଁ ଆପଣମାନଙ୍କ ସହାୟତା ମଧ୍ୟ ଆବଶ୍ୟକ ମନେ କରେ ।

ଦ୍ରୌପଦୀ ମୋର ଆଗମନ ନିତ୍ୟାନ୍ତ ଏକ କାକ-ତାଳ ନ୍ୟାୟ ସଦୃଶ୍ୟ ମନେ ହୁଏ ।

ଚାଣକ୍ୟ ନା ତାହା କେବଳ ଏକ ସଂଯୋଗ ହୋଇ ନ ପାରେ ମାତା, ହୁଏତ ତାହା ଈଶ୍ୱରଙ୍କ ନିର୍ଦ୍ଦେଶ । (ଦ୍ରୌପଦୀ ଶ୍ରୀକୃଷ୍ଣଙ୍କୁ ଚାହିଁଲେ । ଦ୍ରୌପଦୀ ଓ ସେ ହସିଲେ)

ଦ୍ରୌପଦୀ ଆଉ ସଖାଙ୍କ ଆଗମନ ?

ଶ୍ରୀକୃଷ୍ଣ ନା ସଖୀ - ଏବେ ଆଉ ମୋ ସମ୍ମତିର ଆବଶ୍ୟକତା ନାହିଁ । କାରଣ ମୋର ସବୁ ଇଚ୍ଛା ହୁଏତ ପ୍ରକୃତିର ଇଚ୍ଛାରେ ରୂପାନ୍ତରିତ ହୋଇନପାରେ ।

ଦ୍ରୌପଦୀ କାହିଁକି ?

ଶ୍ରୀକୃଷ୍ଣ କଳିର ପ୍ରଭାବ ଏବେ ଚରମାବସ୍ଥାରେ ପହଞ୍ଚି ସାରିଛି ଅତଏବ ମୋତେ ଆଉକିଛି କାଳ ପ୍ରତୀକ୍ଷା କରିବାକୁ ପଡ଼ିବ ।

ଚାଣକ୍ୟ ଆହୁରି ପ୍ରତୀକ୍ଷା ? ନା ଅସମ୍ଭବ । ମୁଁ ଆଉ ପ୍ରତୀକ୍ଷା କରିପାରିବି ନାହିଁ ।

ଦ୍ରୌପଦୀ ତା'ହେଲେ କ'ଣ କରିବେ ?

ଚାଣକ୍ୟ ପ୍ରଚେଷ୍ଟା ଆରମ୍ଭ କରିବି । କାରଣ ଶ୍ରୀମଦ୍‌ଭଗବତ ଗୀତାର କର୍ମଯୋଗ ମୁଁ ପଢ଼ିଛି । ଆଉ କର୍ମ ଉପରେ ମୋର ପ୍ରଚଣ୍ଡ ଆସ୍ଥା ଓ ଅଧିକାର ରହିଛି ।

ଶ୍ରୀକୃଷ୍ଣ ଏବଂ ଉକ୍ତ ପୁସ୍ତକରେ ସାଂଖ୍ୟଯୋଗ ଏବଂ ଭକ୍ତିଯୋଗର ବାଣୀ ମଧ୍ୟ ଉଲ୍ଲେଖ ଅଛି । ସେ ସବୁ ମଧ୍ୟ ପଢ଼ିଥିବେ ନିଶ୍ଚୟ ।

ଚାଣକ୍ୟ ଖୁବ୍ ଭଲ ଭାବରେ ପଢ଼ିଛି । କିନ୍ତୁ ମୋ' ପାଇଁ ସେ ସବୁ ବାଣୀ ସେତେ ଉପଯୋଗୀ ମନେ ହୁଏ ନାହିଁ । କାରଣ ମୁଁ ଆପଣା କର୍ମରେ ବିଶ୍ୱାସ କରେ । ମୋ' କର୍ମ ମୋ' ମନର ଫସଲ, ଇଚ୍ଛାର ଫସଲ। ସେଥିରେ ମୋର ପୂର୍ଣ୍ଣ ବିଶ୍ୱାସ ଅଛି ।

ଶ୍ରୀକୃଷ୍ଣ ଭଗବତ ଗୀତାର ଶେଷ ଶ୍ଳୋକ ମଧ୍ୟ ପଢ଼ିଥିବେ ନିଶ୍ଚୟ ।

ଚାଣକ୍ୟ ଯତ୍ର ଯୋଗେଶ୍ୱର କୃଷ୍ଣ ଯତ୍ର ପାର୍ଥୋଧନୁର୍ଦ୍ଧର
ତତ୍ର ଶ୍ରୀବିଜୟର୍ଭୂତି, ଧ୍ରୁବାନୀତିର୍ମତିର୍ମମ ।
ତାହା ହିଁ ତ ମୋର ସଫଳତାର ରହସ୍ୟ ।

ଶ୍ରୀକୃଷ୍ଣ (ହସି) ତା' ହେଲେ ମୁଁ ଆସୁଛି ।

ଦ୍ରୌପଦୀ ଅପେକ୍ଷା କରନ୍ତୁ ସଖା - ଶ୍ଳୋକର ଅର୍ଥ ବ୍ୟାଖ୍ୟା କଲେ ତ ଜଣାଯାଏ ଯେ ବିଜୟ ପାଇଁ ଆପଣଙ୍କ ସହିତ ପାର୍ଥଙ୍କର ମଧ୍ୟ ସହଯୋଗ କରିବାର ଆବଶ୍ୟକତା ଅଛି । ଅଥଚ ଆପଣ ବିଦାୟ ନେବାକୁ ଚାହାଁନ୍ତି । କାହିଁକି ଆଚାର୍ଯ୍ୟ ?

ଚାଣକ୍ୟ ଆପଣ କେବଳ ଶ୍ଳୋକର ଶବ୍ଦାର୍ଥକୁ ବିଶ୍ଳେଷଣ କଲେ ମାତା । କିନ୍ତୁ ଗୀତାର ସମସ୍ତ ବାଣୀର ଶବ୍ଦାର୍ଥ କେବଳ ପାଠକଙ୍କ ନିମନ୍ତେ ଉଦ୍ଦିଷ୍ଟ। ତା'ର ଭାବାର୍ଥକୁ ଉପଲବ୍ଧି କଲେ ଦେଖିବେ ଯେ ଆମର ସତ୍ ଚେଷ୍ଟା ଓ ସତ୍ କର୍ମର ନିରନ୍ତର ସାଧନା ହିଁ ପାର୍ଥ ସଦୃଶ ଏବଂ କର୍ମର ସମର୍ପିତ ଭାବନା ହିଁ ଯୋଗେଶ୍ୱର ଶ୍ରୀକୃଷ୍ଣଙ୍କ ସଦୃଶ । ଅତଏବ କର୍ତ୍ତା ଆଉ ତା'ର କର୍ମ ଯେତେବେଳେ ଏକାତ୍ମ ହୋଇଯାଆନ୍ତି ସେତେବେଳେ ସଫଳତା ଆପେ ଆପେ ଫଳବତୀ ହୁଏ ତାହା ହିଁ ସୃଷ୍ଟିର ନିୟମ ।

ଦ୍ରୌପଦୀ ବାଃ ଚମତ୍କାର । ଅତି ସୁନ୍ଦର ଆପଣଙ୍କର ଚିନ୍ତା ଆଉ ଚେତନାର ଦୃଷ୍ଟିକୋଣ ।

ଚାଣକ୍ୟ ମାତ୍ର ତା'ର ସଫଳତା ପାଇଁ ଆପଣ କ'ଣ ସହାୟତା କରିବେ ନାହିଁ ?

ଦ୍ରୌପଦୀ ଅବଶ୍ୟ କରିବି ବୋଧ ହୁଏ ସେଇଥିପାଇଁ ତ ମୋର ଆଗମନ କିନ୍ତୁ କିପରି... ?

ଚାଣକ୍ୟ ଆମକୁ ପୁଣି ଜନପଦକୁ ଫେରିଯିବାକୁ ପଡ଼ିବ ।

ଶ୍ରୀକୃଷ୍ଣ କିନ୍ତୁ ସାବଧାନ ଆଚାର୍ଯ୍ୟ । ଏବେ ସେ ସମୟ ଆଉ ନାହିଁ କି ସେ ଜନପଦ ମଧ ନାହିଁ ଯେ ଆପଣଙ୍କୁ କିମ୍ବା ଯାଜ୍ଞସେନୀଙ୍କୁ ସହାସ୍ୟ ବଦନରେ ଜନତା ସ୍ୱାଗତ କରିବେ । ବରଂ ବିଭିନ୍ନ ତୀର୍ଯ୍ୟକ ପ୍ରଶ୍ନବାଣରେ ଆପଣମାନେ ଜର୍ଜରିତ ହୋଇପାରନ୍ତି । ଅପମାନିତ ହୋଇପାରନ୍ତି ।

ଚାଣକ୍ୟ ଉଚିତ କହିଛନ୍ତି ବାସୁଦେବ । ସାମ୍ବାଦିକଙ୍କର ସମସ୍ତ ପ୍ରଶ୍ନର ଉତ୍ତର ଦେଇ ମୁଁ ଆଜି ପ୍ରସ୍ତୁତ ହୋଇ ଆସିଛି । (ଦ୍ରୌପଦୀଙ୍କୁ) ଆପଣ ମଧ ପ୍ରସ୍ତୁତ ହୁଅନ୍ତୁ ?

ଦ୍ରୌପଦୀ ମୋତେ କ'ଣ କରିବାକୁ ହେବ ?

ଚାଣକ୍ୟ ମୁଁ ଖୋଲି ଦେଲି ମୋର କେଶାଗ୍ର । ଆପଣ ମଧ ଖୋଲି ଦିଅନ୍ତୁ ଆପଣଙ୍କ ବେଣୀର ବନ୍ଧନୀକୁ ଆଉ ତେଜମୟୀ ସ୍ଫୁଲିଙ୍ଗ ଭଳି ନାରୀ ସମାଜର ଶିରାପ୍ରଶିରାରେ ପ୍ରବେଶ କରି ଅନ୍ୟାୟ ଓ ନାରୀ ନିର୍ଯ୍ୟାତନା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରନ୍ତୁ, ଏବଂ ସମାଜରେ ଥିବା ଦୁର୍ଯ୍ୟୋଧନ ଆଉ ଦୁଃଶାସନର ମୂଳୋତ୍ପାଟନ କରନ୍ତୁ । ଆଉ ମୋର ଏ କେଶାଗ୍ର ମଧ ସେତେଦିନ ଉନ୍ମୁକ୍ତ ରହିବ ଯେତେଦିନ ପର୍ଯ୍ୟନ୍ତ ଦେଶରେ, ରାଜ୍ୟରେ ଜଣେ ଜଣେ ଉତ୍ତମ ଶାସକ, କର୍ତ୍ତବ୍ୟନିଷ୍ଠ ଅଧିକାରୀ, ପ୍ରଜାବତ୍ସଳ ଏବଂ ଦେଶଭକ୍ତ ଶାସକର ରାଜ୍ୟାଭିଷେକ ମୁଁ କରାଇ ନ ପାରିଛି । ଆସନ୍ତୁ ଆଉ ପ୍ରତୀକ୍ଷା ନୁହେଁ ବରଂ ନିଷ୍ପେଶିତ ଜନତାଙ୍କର ବହୁ ପ୍ରତୀକ୍ଷିତ ପ୍ରତୀକ୍ଷାର ଏବେ ଅନ୍ତ ଘଟାଇବାକୁ ପଡ଼ିବ... । (ଶ୍ରୀକୃଷ୍ଣ ହସୁଥିଲେ । ଦ୍ରୌପଦୀ ତାଙ୍କ ନିକଟକୁ ଯାଇ ଆଶୀର୍ବାଦ ଭିକ୍ଷା କଲେ ।)

ଦ୍ରୌପଦୀ ତୁମେ କ'ଣ ତୁମର ପ୍ରାଣପ୍ରିୟା କୃଷ୍ଣାର ସହାୟତା କରିବ ନାହିଁ ସଖା ? (ଶ୍ରୀକୃଷ୍ଣ ନିରବରେ ହସୁଥିଲେ)

ଚାଣକ୍ୟ ହେ ନିର୍ବିକାର ପୁରୁଷ । ମୋର କର୍ମ ଯଦି ମୋର ଅହଂକାର ହୁଏ ତା'ହେଲେ ସେ ଅହଂକାର ତ ତୁମର ଆଶୀର୍ବାଦ ସଦୃଶ । ଆଉ ତା'ର ଫଳାଫଳ ମଧ ଅମୃତମୟ ହେଉ ବା ବିଷମୟ ସେ ସବୁଥିରେ କେବଳ ତୁମର ହିଁ ତ ଏକଚ୍ଛତ୍ର ଅଧିକାର । ତୁମେ ଆଶୀର୍ବାଦ କର ଅବା ଦିଅ ଅଭିଶାପ, ତଥାପି ଚାଣକ୍ୟ ତା'ର କର୍ମକରି ଚାଲିଥିବ ...

"ଜାନାମି ଧର୍ମ ନ ଚମେ ପ୍ରବୃତ୍ତି ଜାନାମି ଅଧର୍ମ ନ ଚମେ ନିବୃତ୍ତି
ତ୍ୱୟା ହୃଷିକେଶ ହୃଦିସ୍ଥିତେନ ଯଥା ନିଯୁକ୍ତୋସ୍ମି ତଥା କରୋମି ।"

(ଦୁହେଁ ପ୍ରଣାମ କରି ମଞ୍ଚ ଉପରୁ ଜନତାଙ୍କ ମଧ୍ୟରେ ଲୀନ ହୋଇଗଲେ । ଶ୍ରୀକୃଷ୍ଣ ଦୁଇ ହାତଟେକି ହସୁଥିଲେ ଅଥବା ବଂଶୀବାଦନ କରୁଥିଲେ ।)

(ଯବନିକା)

## ପାତ୍ର ପରିଚୟ

| | |
|---|---|
| ଡଷ୍ଟବିନ୍ / ନଖିଆ / ଚା'ବାଲା | ପ୍ରଜ୍ଞା ରଞ୍ଜନ ଖଟୁଆ |
| ବିମଳ | ଉଦିତଗୁରୁ ମହାପାତ୍ର |
| ପ୍ରତୀକ | ନବୀନ କୁମାର ପରିଡ଼ା |
| ଭୋଳା | ଭକ୍ତି ରଞ୍ଜନ ଦାସ |
| ପ୍ରବୀର / ବଣ୍ଟି / ସୁଧାଂଶୁ | ଦେବଦତ୍ତ ପ୍ରଧାନ |
| ପ୍ରସାଦ / ମୋନାଲି | ଶଙ୍କର୍ଷଣ ପ୍ରଧାନ |
| ଭାନୁଆ | ସୁଜିତ ଜେନା |
| ଭିକାରୀ ୧ | ଶକ୍ତି ପ୍ରସାଦ ମିଶ୍ର |
| ପୋଲିସ | ସୁଶାନ୍ତ ଦାସ ମହାପାତ୍ର |
| ଭିକାରୀ / ହିଞ୍ଜିଡ଼ା / ରାକେଶ | ଚଞ୍ଚ |
| ପ୍ରିୟଙ୍କା / ସ୍ମିତା | ସୁନନ୍ଦା ପରିଡ଼ା |
| ରଶ୍ମୀ | ସୋନିକା ସାହୁ |
| ମଞ୍ଚସଜ୍ଜା | ପ୍ରଜ୍ଞାଦତ୍ତ ସାହୁ |
| ପୋଷାକ ଓ ରୂପସଜ୍ଜା | ମ୍ୟାଜିକ ଥିଏଟର |
| ଆଲୋକ | ସଞ୍ଜୟ |
| ସଙ୍ଗୀତ | ଶକ୍ତି ପ୍ରସାଦ ମିଶ୍ର |
| ନିର୍ଦ୍ଦେଶନା | ନବୀନ କୁମାର ପରିଡ଼ା |
| ପ୍ରଯୋଜନା | ନବୀନ ବର୍ଣ୍ଣାଳୀ, ଭୁବନେଶ୍ୱର |
| ପ୍ରଥମ ପରିବେଷଣ | ମେ ୨୪, ୨୦୧୭, ରବୀନ୍ଦ୍ର ମଣ୍ଡପ, ଭୁବନେଶ୍ୱର |
| ଦ୍ୱିତୀୟ ପରିବେଷଣ | ଅଗଷ୍ଟ ୨, ୨୦୧୭, ନାଟ୍ୟଧାରା, ଭଞ୍ଜ କଳା ମଣ୍ଡପ, ଭୁବନେଶ୍ୱର |

## ପ୍ରଥମ ଦୃଶ୍ୟ

(ଦିଲ୍ଲୀର ପ୍ଲାଟଫର୍ମ ନମ୍ବର ୧୨ର ଦୃଶ୍ୟ-ଡଷ୍ଟବିନ୍ ପଛରୁ ଡଷ୍ଟବିନ୍‌ର ପ୍ରବେଶ ।)

ଡଷ୍ଟବିନ୍ (ଗୀତ)

ମୁଁ ଏକ ଡଷ୍ଟବିନ୍
ମୋ' ଚାରିପାଖେ, ଅନ୍ତରେ, ବାହାରେ
ପ୍ରସାଧନ ବୋଳି।
ନିଶ୍ଚିନ୍ତ ମନରେ।
ଖୋଜି ନାହିଁ କେବେ ନିଜ ଅନ୍ତରକୁ ।
ଅସ୍ତିତ୍ୱକୁ।
ମୁହଁରେ ଓଢ଼ଣୀ ଦେଇ
ନିଷ୍ଠାପର, ଶୃଙ୍ଖଳିତ, ଦାୟିତ୍ୱ ସମ୍ପନ୍ନ।
ଭରିଅଛି କୁଢ଼ କୁଢ଼ ଜାତୀୟତାବୋଧ,
ସହିବାର ସୀମା, ଆକାଶର ସୀମାଠାରୁ ସୀମାହୀନ,
ମୋ ସଫଳତାର କାହାଣୀ
ଆପଣ ଜଳିବେ ଈର୍ଷାରେ ।
କଥାରେ କଥାରେ, ଉକ୍ତି ଆଉ ବକ୍ରୋକ୍ତିରେ,
ବୁଝିବା ଲୋକ ତ ବୁଝିଯିବେ ନିଶ୍ଚେ
କହବା କେଉଁଠି ।
ସମୟ ସୁବିଧା ଦେଖି ।
କୁଢ଼କୁଢ଼ ଅଳିଆର ଗନ୍ତାଘର
ସଜେଇ ହୋଇ ବସିଛି
ଅତ୍ୟାଧୁନିକ ଚେହେରାରେ
ଅନ୍ଧାରରେ ଏକା ଏକା ନିଭୃତରେ ବସି
ଅଥବା ସେଠି ଲୁଚି ବସିଥିବା ଆଉ ଏକ
ମୁଁ ବସିଛି ଏଠି
ଶିକ୍ଷିତ, ମାର୍ଜିତ, ଭଦ୍ରଲୋକ ଭଳି
ଅନ୍ୟ ଅନେକଙ୍କ ପରି ମୋ' ଭିତରେ
ଅଥଚ ମୁଁ ନିରବ, ଗମ୍ଭୀର ।
ସହନଶୀଳତା, ଧରଣୀର ସୀମାଠାରୁ ଅଧିକତର।
ମୋ ମୁହଁରୁ ଶୁଣିଲେ
ତଥାପି କହିବି...
ପିଠାରେ ପୁର ଅଥବା କଥାର ନଥା ଭଳି
ଯଦିବା କିଛି ଅବୁଝା ରହିଯାଏ,
କଥା ଦେଲି, କଥା ହେବି
(ନୈପଥ୍ୟରୁ ଟ୍ରେନ୍ ଆସିବାର ସୂଚନା ।)

ଘୋଷଣା ଯାତ୍ରୀଗଣ କୃପୟା ଧ୍ୟାନ ଦିଜିୟେ । ଗାଡ଼ି ନମ୍ବର ୨୨୮୨୩ ଭୁବନେଶ୍ୱର-ଦିଲ୍ଲୀ ରାଜଧାନୀ ଏକ୍ସପ୍ରେସ୍ ୧୨ ନମ୍ବର ପ୍ଲାଟଫର୍ମ ପର ଆ ରହି ହେ । Attention Please. Train No - 22823, Bhubaneswar-New Delhi Rajdhani Express is arriving on Platform No-12.

(ଷ୍ଟେସନର ଗତିବିଧି ଚଳଚଞ୍ଚଳ ହୋଇ ଉଠିଲା । ତା'ରି ଭିତରେ ବିମଳବାବୁ ବ୍ୟାଗ ଟାଣି ଟାଣି ଆଣି ଡଷ୍ଟବିନ୍ ପାଖରେ ଥିବା ବେଞ୍ଚରେ ବସିଲେ ପକେଟ୍‌ରୁ ଫୋନ୍ କାଢ଼ି କଥା ହେଲେ ।)

ବିମଳ ହାଃଲୋ- ପୁଅ ! ମୁଁ ଏବେ ଦିଲ୍ଲୀ ଷ୍ଟେସନ୍‌ରେ ପହଞ୍ଚିଗଲି । ପ୍ଲାଟଫର୍ମ ନଂ -୧୨ରେ () ପାଖରେ ଥିବା ବେଞ୍ଚରେ ବସିଛି । ତୁ କେତେବେଳେ ଆସିବୁ ।

ଏଁ...ଆହୁରି ଘଣ୍ଟେ ଉପରେ ଲାଗିବ ? କ'ଣ କହିଲୁ ଆଜମୀରା ଗେଟ୍ ଆଡ଼କୁ ଯିବି । ନା ନା...ମୁଁ ବରଂ ଏଇଠି ବସିଛି ତୁ ଆସିଲେ ଫୋନ୍ କରିବୁ ତା'ପରେ ମୁଁ ଏଠୁ ବାହାରିବି । ମୁଁ ବସିବସି ତା'ହେଲେ ପରଟା ଆଳୁବିନ୍ ଭଜା ଖାଇନିଏ । ହଁ ହଁ ତୋ' ମାଆ ଦେଇଥିଲା..., ଆରେ ଖରାପ କାହିଁକି ହେବ । ଶୀତଦିନ ପୁଣି ଏ.ସି. ବଗିରେ ଆସିଲି । ବସି ବସି ଆଉ କ'ଣ କରିବି । ହଉ ତୁ ଟିକିଏ ଶୀଘ୍ର ଆସିବାକୁ ଚେଷ୍ଟା କରିବୁ । (ବିମଳବାବୁ ଫୋନ୍ ରଖି ବ୍ୟାଗ୍‌ରୁ ପୁଡ଼ିଆ ଖୋଲି ଟିଫିନ୍ ବାହାର କଲେ ଦୁଇଟି ଜରି ପୁଡ଼ିଆ, ଗୋଟିକରେ ପରଟା ଅନ୍ୟଟିରେ ଭଜା ଖାଇବାକୁ ଯାଇ ଦେଖିଲେ ଗନ୍ଧ ହୋଇଯାଇଛି । ନାକ ଟେକିଲେ ଜରିପୁଡ଼ିଆ ଦୁଇଟି ବନ୍ଦ କରି ଡଷ୍ଟବିନ୍‌କୁ ଫୋପାଡ଼ିଦେଇ ଫେରିଲା ବେଳକୁ ଜଣେ କିଏ ତାଙ୍କୁ ଧକ୍କା ଦେଲା । ବିମଳବାବୁ ରାଗି ଉଠି କ'ଣ କହିଲା ବେଳକୁ ପିଲାଟି ହାତଯୋଡ଼ି ଠିଆ ହୋଇଥିବାର ଦେଖି ବିମଳବାବୁ ଶାନ୍ତ ହେଲେ ବୋତଲ ଖୋଲି ଢଗଢଗ କରି ପାଣି ପିଇଗଲେ । ପିଲାଟା ଡଷ୍ଟବିନ୍ ଭିତରୁ କିଛି ଖୋଜିଲା... ।)

ଡଷ୍ଟବିନ୍ — ୟା ନା ପ୍ରତୀକ (ଏତିକିବେଳେ ପ୍ରତୀକ ପରଟା ପୁଡ଼ିଆ ନେଇ ଥୋଇଲା ଆଉ କୁକୁର ତାକୁ ଟାଣି ନେଇଗଲା...) ଆଉ ତା' ନାଁ ଭୋଳା ।

ପ୍ରତୀକ — ହେ, ହେ...(ଭୋଳା ପଳେଇଲା)

ଡଷ୍ଟବିନ୍ — ତାଙ୍କ ପରିଚୟ ତ ଆପଣ ପାଇସାରିବେଣି । ସେ ବିମଳ ବାବୁ ଦିଲ୍ଲୀ ଆସିଛନ୍ତି ପୁଅ ପାଖକୁ ପୁଅ ଆସିବାକୁ ଡେରି ହେଉଛି ଆଉ ସେ ତା'ରି ପ୍ରତୀକ୍ଷାରେ ବସିଛନ୍ତି ୧୨ ନମ୍ବର ପ୍ଲାଟଫର୍ମରେ... ।

(ଦେଖାଗଲା ଡଷ୍ଟବିନ୍ ଭିତରୁ ତରକାରୀ ପୁଡ଼ିଆ ବାହାର କରି ପ୍ରତୀକ ଏଆଡ଼େ ସେଆଡ଼େ ଅନେଇଲା । ବିମଳ ବାବୁ ପୁରୁଣା ଖବରକାଗଜଟେ ଡଷ୍ଟବିନ୍ ଆଡ଼କୁ ଫୋପାଡ଼ି ଦେଲେ । ତାକୁ ସଜାଡ଼ି ନେଇ ସେ ଖାଇ ବସିଲା, କୁକୁର ଭୋଳା ମଧ ତା' ପାଖକୁ ପେଟେଇ ପେଟେଇ ଆସି କୁଁ କୁଁ ହେଲା ।)

ପ୍ରତୀକ — ହଁ । That's like a good boy, ୟା କୁ ହିଁ ଭଦ୍ରତା କହନ୍ତି । ପେଟରେ ଭୋକଥିବ ଅଥଚ ମାଗି ଖାଇବାକୁ ଲାଜ ମାଡ଼ିବ । ଚୋରି କରି ଖାଇବା ତ' ବିଲକୁଲ ନୁହେଁ...ନା...ନା...ତା' ଅପେକ୍ଷା ମରିଯିବା ଭଲ ।

ଭୋଳା — କୁଁ କୁଁ ହେଲା ।

ପ୍ରତୀକ — ସେଇଥିପାଇଁ ମୁଁ ତୋ' ଉପରେ ବିରକ୍ତ ହୁଏ । ଚୋରି କାହିଁକି କରୁଥିଲୁ ? ଚୋରି କରିବା ଅନ୍ୟାୟ ।...ଭୋକ ଲାଗୁଛି ? ନେ ଖଣ୍ଡେ ଖାଆ...ଭାରି ବଢ଼ିଆ ସୁଆଦ ଲାଗୁଛିରେ... ।

ଭୋଳା — କୁଁ କୁଁ ହେଲା...

ପ୍ରତୀକ — କ'ଣ ଖରାପ ଲାଗୁଛି ? ହଁ...ହଁ...ତୋ'ରି ଭଳିଆ ମୁଁ ଅନେକ ମଣିଷ ଦେଖିଛି । ଭୋଜି ଭାତରେ, ବାହାଘର ସାହାଘରରେ ଭୋରୀ ଭୋଜନ ପେଟେ ଖାଇସାରି ବାହାରକୁ ଆସି ହାକୁଟି ମାରି କହିବେ...ଛି...ଛି...ଭୋଜି ଭାତରେ କ'ଣ ଏମିତି ଖାଇବା କରାଯାଏ ?

ଭୋଳା — (ହସିଲା)...

ପ୍ରତୀକ ମୁଁ କିନ୍ତୁ ସେମିତି ନୁହେଁ । ଯେଉଁଦିନ ଯାହା ମିଳିଲା ଜଗନ୍ନାଥଙ୍କର ମହାପ୍ରସାଦ ଭାବି ପେଟେ ଖାଇଦିଏ ଆଉ ଉପରକୁ ହାତଟେକି ପ୍ରଭୁଙ୍କର ଗୁଣ ଗାଇଯାଏ ।

ଭୋଳା ଆଉ ଖଣ୍ଡେ ମିଳୁ । (କୁକୁର ଗୋଡ଼ ମଝିରେ ପଶେ)

ପ୍ରତୀକ ସେ କଥା କହୁନୁ । ପେଟରେ ଭୋକ ମୁହଁରେ ଲାଜ...ନେ, ନେ...ବହୁତ ଅଛି । ମୁଁ କ'ଣ ଦେବାକୁ ମନା କରୁଛି ? ଆହାର ବାଣ୍ଟିଣ ଖାଇବ ଅଳ୍ପ ବହୁତ ନ କହିବ ।

ଭୋଳା ସେ କଥା କିଏ ଭାବେ ?

ପ୍ରତୀକ ସମସ୍ତେ ଭାବନ୍ତି, ଆପେ ଖାଇଲେ ବୋପାର ନାଁ । ତୋ'ରି କଥା କହୁନୁ । ମୁଁ କେତେବେଳେ କେଉଁଠି ଖାଇବା ଟିକିଏ ପାଇଲେ ତୁ କେମିତି ଜାଣିପାରୁ ଯେ ଆସି ପହଞ୍ଚିଯାଉ ହେଲେ ତୁ ଖାଇଲା ବେଳେ କାହିଁ ମୋ କଥା ତ ତୋର ମନେପଡ଼େନା...

ଭୋଳା ଛି...ଛି...ସେମିତି କହିବ ନାହିଁ । ମୋର ତୁମ କଥା ସବୁବେଳେ ମନେପଡ଼େ ହେଲେ ମଡ଼ ମଡ଼ା...ମଇଳା ହେଲା ମୋ ଖାଦ୍ୟ...ତାକୁ କ'ଣ ତୁମେ ଖାଇବ ?

ପ୍ରତୀକ ହଉ ନେ...ନେ (କୁକୁର ତା' ହାତରୁ ନିଏ) ଆଜି ସକାଳୁ ସକାଳୁ ଭୁରି ଭୋଜନ ମିଳିଗଲା । ଆଉ ଦିନ ସାରା ମିଳୁକି ନ ମିଳୁ ପରବାୟ ନାହିଁ ।

ବିମଳ ଆରେ ବାବୁ ! ଏ ପରଟା, ତରକାରୀ ତୁମକୁ ଗନ୍ଧ ହେଉନି ?

ପ୍ରତୀକ (ଚାହିଁ ହସିଛି) ଭାବୁଛନ୍ତି କି ବେକାରଟାରେ ଫୋପାଡ଼ି ଦେଲି କାହିଁକି ? ଖାଇ ଦେଇଥିଲେ ଚଳିଥାନ୍ତା । ଖାଇବେ ଯଦି ନେଉ ନାହାଁନ୍ତି ?

ବିମଳ ଆରେ ନା ନା...ମୋତେ ତ ଭାରି ଗନ୍ଧ ହେଉଥିଲା ଖାଇପାରିଲିନି ବୋଲି ତ ଫୋପାଡ଼ି ଦେଲି ।

ପ୍ରତୀକ ଖାଦ୍ୟ ଫୋପାଡ଼ି ଦେବାବେଳେ ଅନାହାରରେ ମରୁଥିବା ମଣିଷ ମାନଙ୍କ କଥା ଭାବିଥିଲେ ନା ଭାବିଥିଲେ ଯେ ନିଜକୁ ମଧ୍ୟ ଦିନେ ନା ଦିନେ ଓପାସରେ ଆଉଟୁ ପାଉଟୁ ହେବାକୁ ପଡ଼ିବ । ଠିକ୍ ଏବେ ଯେମିତି ଆପଣ ଛଟପଟ ହେଉଛନ୍ତି ।

ବିମଳ ମୋର ବି ଖାଦ୍ୟ ଫୋପାଡ଼ିବାକୁ ଇଚ୍ଛା ନଥିଲା । କିନ୍ତୁ ଖାଇପାରିଲିନି...ତେଣୁ... ।

ପ୍ରତୀକ (ହସିଲା) ବୁଝିଲୁ ଭୋଳା...ଖାଇବା ପାଇଁ ବଞ୍ଚିବା ଆଉ ବଞ୍ଚିବା ପାଇଁ ଖାଇବା ଭିତରେ ଏମିତି ଅନେକ ପ୍ରଭେଦ... । ଆକାଶ ପାତାଳର ପ୍ରଭେଦ... । ଖାଇବା ପାଇଁ ବଞ୍ଚୁଥିବା ମଣିଷମାନେ ଖାଦ୍ୟରେ ମହକ ଖୋଜନ୍ତି...ସ୍ୱାଦ ଖୋଜନ୍ତି...ଆଉ ସେଇ ସ୍ୱାଦ ଓ ମହକ ଟିକିଏ ଊଣା ପଡ଼ିଗଲେ ସ୍ୱର୍ଗ ନର୍କ ଏକ କରିଦିଅନ୍ତି । ଆଉ ବଞ୍ଚିବା ପାଇଁ ଖାଉଥିବା ମଣିଷମାନେ କେବଳ ଭୋକକୁ ମାରିବା ପାଇଁ ପେଟ ଭରନ୍ତି । ପଚା ସଢ଼ା ଖାଦ୍ୟର ଦୁର୍ଗନ୍ଧ ଭିତରେ ଜୀବନ ବଞ୍ଚାନ୍ତି ଆଉ ଈଶ୍ୱରଙ୍କୁ ଧନ୍ୟବାଦ ଦିଅନ୍ତି ।

ଭୋଳା ମୋ କଥା କହୁନ ? (କୁକୁର ଛିଡ଼ା ହୁଏ)

ପ୍ରତୀକ ଆରେ ଜୀବନ ବଞ୍ଚେଇବା ଜୀବର ଧର୍ମ । କିନ୍ତୁ ଆଉ କାହା ମୁହଁରୁ ଖାଦ୍ୟ ଛଡ଼େଇ ଖାଇବା କିମ୍ବା ଦଶ ଜଣକର ଖାଦ୍ୟ ଏକା ଏକା ହଡ଼ପ କରିବା ଅନ୍ୟାୟ ଅଧର୍ମ ।

ଭୋଳା (ହସିଲା) ଜୀବର ଧର୍ମ ହେଲେ ମଣିଷ ନୁହଁ ।

ପ୍ରତୀକ ତୁ ଠିକ୍ କହିଛୁ । ମଣିଷ ମାନେନା କାରଣ ସେ ପରା ଶ୍ରେଷ୍ଠ ଜୀବ । ସେ ପରା ସବୁ ସାମାଜିକ ନିୟମକୁ ସୃଷ୍ଟି କରିଛି । ଅତଏବ ନିଜ ସ୍ୱାର୍ଥରେ ବାଧା ପଡ଼ିଲେ ସବୁ ନିୟମକୁ ସେ ବିଭିନ୍ନ ଆଳ ଦେଖାଇ ନିଜେ ଭାଙ୍ଗିଦିଏ । ପିଲାମାନଙ୍କର ବାଲିଘର ପରି । ସ୍ୱାର୍ଥପର

ଭୋଳା କିଏ ମୁଁ ?

ପ୍ରତୀକ ତୋତେ ସ୍ୱାର୍ଥପର କିଏ କହିବ ? ତୋ'ଭଳି ପ୍ରଭୁଭକ୍ତ ଜୀବ ଏ ସଂସାରରେ କାହିଁ ?

ଭୋଳା ତୁ ତ ବାରବୁଲା ।

ପ୍ରତୀକ ତା' ଭଳି ମୁଁ ବି ବାରବୁଲା, କେତେବେଳେ ପ୍ଲାଟଫର୍ମ ନଂ-୧୨ ତ କେତେବେଳେ ୧୩ ମୋର ଘର । ଏଇ ବେଞ୍ଚ ମୋ ବିଛଣା ଆଉ ଏଇ ଡଷ୍ଟବିନ୍ ମାନେ ମୋର ରୋଷେଇ ଘର । ମୋ' ଜୀବନର ସେଇ ଗୋଟିଏ ଚିନ୍ତା ରାତିପାହିଲେ ଖାଇବାର ଚିନ୍ତା । ସଂଜ ଗଡ଼ିଲେ ପୁଣି ସେଇ ଖାଇବା ସାଉଁଟିବାର ଚିନ୍ତା - ମୋ' ପାଇଁ ଅତୀତ ବର୍ତ୍ତମାନ ଆଉ ଭବିଷ୍ୟତ ବନ୍ଦ ଘଣ୍ଟାର ପେଣ୍ଡୁଲମ ଭଳି ଅଟକି ଯାଇଛି । ଅଥଚ ମୁଁ ଘୂରୁଛି ସୂର୍ଯ୍ୟ ଭଳି ନିଜ ଚାରିପଟେ । ପ୍ରତିଦିନ ୩୬୦° (ହସିଛି) ନେ ଆଉ ଖଣ୍ଡେ ଖାଆ ଏ ପୃଥିବୀରେ ମୋର ଆବଶ୍ୟକତା କ'ଣ ଅଛି ? ଆଉ ଚୁପ୍‌ଚାପ୍ ବସ...ତୁ ଆଜିକାଲି ବହୁତ ଗପୁଛୁ...ଆଚ୍ଛା ଭୋଳା...କହିଲୁ...ମୁଁ ଏତେ ଦିନ କେମିତି ବଞ୍ଚିଛି ...ଆଉ କାହିଁକି ବା ବଞ୍ଚିଛି ?

ଭୋଳା ନିଜେ ଗପୁଛ ବୁଢ଼ା ପ୍ରଫେସର ଭଳି ।

ପ୍ରତୀକ କ'ଣ କହିଲୁ ମୁଁ ବୁଢ଼ା ପ୍ରଫେସର ? ହେଲେ ମୋ ପାଖରେ ଛାତ୍ରଛାତ୍ରୀ କାହିଁ ? ତୁ ଏକା ମୋର ଶ୍ରୋତା ଆଉ ମୁଁ ବକ୍ତା । ହଁ ହଁ ସେଇଆତ ହୁଏ । ଆଜିକାଲି ବେଳେବେଳେ ସାହିତ୍ୟ ଆସରରେ । ବକ୍ତା ବହୁତ ଶ୍ରୋତା ମାତ୍ର କେତେଜଣ । ସେମାନେ ହୁଏତ ଜରିବାଲା, ମାଇକ୍‌ବାଲା ନହେଲେ ମୋରି ପରି କେତେଜଣ ଅପେକ୍ଷା କରିଥାନ୍ତି ଟିଫିନ୍ ପୁଡ଼ିଆ ପାଇଁ ବସିଥାନ୍ତି । ଆଉ ଖଣ୍ଡେ ମିଳୁ ?

ଭୋଳା ଧନ କାହାର ଧନୀ କିଏ ଦେଖ ।

ପ୍ରତୀକ ଭୁଲ୍ କଥା...ମୁଁ ଡିସ୍‌କଭର୍ କରିବା ପୂର୍ବରୁ ଏ ଧନର ଅଧିକାରୀ ତ କେହିବି ନ ଥିଲେ । ଯେମିତି ବେନାମୀ ସଂପତ୍ତି, ବେନାମୀ ଏକାଉଣ୍ଟ ବେନାମୀ- କିନ୍ତୁ ସିବିଆଇ ଖୋଳତାଡ଼ କଲେ ସେଥିରୁ ନାମ ବାହାରେ । ଅର୍ଥାତ୍ ନାମୀରୁ ଅନାମ ପୁଣି ଅନାମରୁ ନାମୀ...ଚକ୍ରବତ୍ ପରିବର୍ତ୍ତନ୍ତେ...ଦେହାତ୍ମା ଚ ପୁନଃ ପୁନଃ...

ଭୋଳା ଅଇଁଠା ପତ୍ର ଖାଇବାଲୋକ । ପ୍ରବଚନ ଦେବାକୁ ଆରମ୍ଭ କଲାଣି । କ'ଣ କହିବ କୁହ ?

ପ୍ରତୀକ ତୋରି ଭଳି କିଛି ଜୀବ ସେମିତି ଭାବନ୍ତି । କିନ୍ତୁ ପ୍ରକୃତରେ ଅନ୍ୟମାନଙ୍କ ସହିତ ପ୍ରତିଯୋଗିତା କରି ସଂଘର୍ଷ କରି ବଞ୍ଚିବାର ସ୍ୱାଦ ଅଲଗା ।

ଭୋଳା ଜାଣିଛ ଯଦି । ପରାନ୍ନ ଭୋଜି ହୋଇଛ କାହିଁକି ?

ପ୍ରତୀକ ମୁଁ କିନ୍ତୁ ମଲାଙ୍ଗଲଟା ନୁହେଁ । ଆଉ କାହା ଉପରେ ଲଦି ହୋଇପଡ଼ିନି । କିମ୍ବା ଆଉ କାହାର ରକ୍ତ ଶୋଷି ବଞ୍ଚିନି । ମୁଁ କେବଳ ଆବର୍ଜନାରୁ ଉତ୍ତେଜନା ଖୋଜି ଚାଲିଛି ।

ଭୋଳା — ଆରମ୍ଭ ହେଲା ଦର୍ଶନ - ଏଥର ଏଠ ଖସିଯିବା ଭଲ । (ଚାଲିଯିବାକୁ ଚେଷ୍ଟା କଲା)

ପ୍ରତୀକ — ପେଟ ଭରିଗଲା ବୋଧହୁଏ । ଏଣିକି ଆଖିପତା ତଳେ ଦିବା ସ୍ୱପ୍ନ ସବୁ ଭାସି ଭାସି ବୁଲିବ । ସଂସାରଟା ଅୟସ କରିବାର ବେଳାଭୂମି ଭଳି ଲାଗିବ...ଏମିତି ଲାଗିବ ପେଟ କେଁ କଟର ନକରିବା ପର୍ଯ୍ୟନ୍ତ । ଥରେ ପେଟରେ ନିଆଁ ଲାଗିଲେ ସବୁ ସ୍ୱପ୍ନ ଜଳିପୋଡ଼ି ପାଉଁଶ ହୋଇଯିବ । ଆଉ ସେତେବେଳେ ଏଇ ଡଷ୍ଟବିନ୍ ସବୁ ଆଲିସାନ ହୋଟେଲ ପାଲଟିଯିବ । ଆଉ ତା' ଭିତରର ଖାଦ୍ୟ ଇଟାଲିଅନ ଡିସ୍ ପାଲଟିଯିବ ।

(ଏତିକିବେଳେ ପ୍ରବେଶ କଲା ଜଣେ ବ୍ୟକ୍ତି ହାତରେ ଗୋଟିଏ ଖାଇବା ପୁଡ଼ିଆ)

ଡଷ୍ଟବିନ୍ — ଇଏ ଜଣେ ଧର୍ମ ଭୀରୁ ଭାରତୀୟ ଦାନ କରି ପୁଣ୍ୟ ଗୋଟାଇବାକୁ ପ୍ରବଳ ଇଚ୍ଛା ହେଲେ ଅଣ୍ଟିରେ ନାହିଁ ଧନ । ପୁଅ ବାହା କରିବାକୁ ମନ ।

ପ୍ରବୀର — ଏ ଟୋକା...ନେ...ଖାଇବୁ ।

ପ୍ରତୀକ — (ଭୋଳାକୁ) ଖାଇବୁ...

ଭୋଳା — ଭୋକ ନାହିଁ । ଦେଲେ ମନା କରିବି ନାହିଁ ।

ପ୍ରତୀକ — ତା'ପରେ ବାନ୍ତି କରି ପୁଣି ପଛରେ ତାକୁ ଚାଟିବୁ କିନ୍ତୁ ମୁଁ ତୋ' ବାନ୍ତିକୁ ଚାଟି ଖାଇପାରିବିନି ।

ପ୍ରବୀର — ନେ ରଖିଦେ । ପରେ ଖାଇବୁ ।

ପ୍ରତୀକ — କେତେବେଳେ ଖାଇବି ?

ପ୍ରବୀର — ସଞ୍ଜକୁ ନହେଲେ ରାତିକୁ

ପ୍ରତୀକ — ତା'ପରେ କିଏ ଖାଇବାକୁ ଦେବ ?

ପ୍ରବୀର — ମୁଁ କେମିତି କହିବି ?

ପ୍ରତୀକ — ତା'ହେଲେ ଆଜି ଦେଉଛ କାହିଁକି ?

ପ୍ରବୀର — ମୋ ଇଚ୍ଛା...

ପ୍ରତୀକ — ଇଚ୍ଛା ନୁହେଁ ଆଶଙ୍କା ।

ପ୍ରବୀର — ମାନେ...

ପ୍ରତୀକ — ଆଜି କ'ଣ ତୁମ ଜନ୍ମଦିନ ?

ପ୍ରତୀକ — ସ୍ତ୍ରୀ ନ ହେଲେ ପୁଅ, ଝିଅର...

ପ୍ରବୀର — ନା...

ପ୍ରତୀକ — ତା'ହେଲେ ବାପା ମାଆଙ୍କର ଶ୍ରାଦ୍ଧ ଶାନ୍ତିର ଦିନ ନିଷ୍ଟୟ...

ପ୍ରବୀର — ହଁ

ପ୍ରତୀକ — ସେଇ ଆଶଙ୍କାରେ ତୁମେ ସକାଳୁ ସକାଳୁ ଚନ୍ଦନ ତିଳକ ଲଗାଇ ଖାଦ୍ୟ ପୁଡ଼ିଆ ଧରି ଧର୍ମ ଗୋଟେଇବାକୁ ବାହାରି ପଡ଼ିଛ । କେତେଟା ପୁଡ଼ିଆ ଆଣିଥିଲ...

ପ୍ରବୀର ୨୧ଟା... ।

ପ୍ରତୀକ ଆଉ ଗୋଟିଏ ବଳିଛି-ମାନେ ୨୦ ପୁଟୁଳି ଧର୍ମ ତୁମେ ଗୋଟେଇ ସାରିଲଣି...ଏଇଟା ବି...ଅନ୍ୟ କାହାକୁ ଦେଇଦିଅ ମୋର ଦରକାର ନାହିଁ ।

ପ୍ରବୀର ମାଗିଖିଆଙ୍କର ବଡ଼ବଡ଼ କଥା...

ପ୍ରତୀକ No - N0 Gentleman Dont tell Lie. ମୁଁ ତୁମକୁ ମାଗି ନାହିଁ ।

ପ୍ରବୀର କୁକୁର ଭଳି ଅଇଁଠା ଗୋଟେଇ ଖାଉଛୁ ଲାଜ ଲାଗୁନି ।

ଭୋଲା (ଭୁକିଲା)

ପ୍ରତୀକ May be କିନ୍ତୁ ଚୋରି କରୁନି କି ମାଗି ଖାଉନି । ତୁମର ଯଦି ଦାନ କରି ଧର୍ମ ଗୋଟେଇବାର ଏତେ ଇଛା ମନ୍ଦିର, ଗୀର୍ଜା ବା ମସ୍‌ଜିଦ୍‌କୁ ଯାଉନ । ସେଠି ଦାନ ନେବାକୁ ଅନେକ ଲୋକ ଅନେଇ ବସିଛନ୍ତି । ମନ୍ଦିର ଭିତରେ ବ୍ରାହ୍ମଣ, ବାହାରେ ଭିକାରୀ ଆଉ କୁଷ୍ଠରୋଗୀ...ସେଠିକି ନ ଯାଇ ଏଠି ଆସି ମୋତେ ଅନ୍ୟାୟ କରିବାକୁ ବାଧ କରୁଛନ୍ତି କାହିଁକି ?

ପ୍ରବୀର (ବିମଳକୁ ଚାହିଁ) ଶୁଣୁଛନ୍ତି ଶୁଣିଛନ୍ତି ଅଇଁଠା ଖିଆର ଧର୍ମ ଜ୍ଞାନ ।

ପ୍ରତୀକ କାହାକୁ ଗାଳି ଦେଉଛନ୍ତି ।

ପ୍ରବୀର ତୋତେ ଆଉ କାହାକୁ ?

ପ୍ରତୀକ ଟିକିଏ ଆଗରୁ ତ ଯାଚି ଯାଚି ଖାଇବା ଦେଉଥିଲ । ଧର୍ମ ଗୋଟେଇବାକୁ ବାହାରିଛ ନା ପାପ ।

ପ୍ରବୀର ଚୁପ୍ କର ।

ଭୋଲା (ଭୋକିଲା ଗୋଡ଼େଇ ଆସିଲା)

ବିମଳ ଆରେ ବାବୁ ସେ ନ ନେଉଛି ତ ନ ନେଉ କେଉଁ ମନ୍ଦିର ପାଖକୁ ଯାଇ ଦାନକରି ଦେଉନ ?

ପ୍ରବୀର ବ୍ରାହ୍ମଣ ମାନଙ୍କୁ ଦାନ କଲେ ତାଙ୍କୁ ପଙ୍ଗତ ଦେବାକୁ ପଡ଼ିବ ତା' ଉପରେ ପୁଣି ଯୋଡ଼ ଆଉ ଦକ୍ଷିଣା...ଭିକାରୀ ମାନଙ୍କର ୟୁନିୟନ ହେଲାଣି । ଅତି କମ୍‌ରେ ୧୦୧ ଟଙ୍କା ଜଣକା ମିନିମମ୍ ୨୧ ଜଣଙ୍କ ପାଇଁ ଡିପୋଜିଟ୍ କରିବାକୁ ପଡ଼ିବ । କୁଷ୍ଠରୋଗୀଙ୍କ ୟୁନିୟନରେ ଟଙ୍କା ସାଙ୍ଗକୁ ଚିକେନ୍ ନହେଲେ ମଟନ୍ ବିରିୟାନୀର ପଇସା ଦାଖଲ କରିବାକୁ ପଡ଼ିବ । କ'ଣ କରିବା କହିଲେ କି ଯୁଗ ହେଲା ଇୟେ ଆମ ଭଳି ମଧ୍ୟବିତ୍ତ ଲୋକ ବାପା ମାଆଙ୍କର ଶ୍ରାଦ୍ଧ ଶାନ୍ତି କେମିତି କରିବା କୁହନ୍ତୁ । ଏଇ ଦେଖୁ ନାହାଁନ୍ତି ଅଳିଆରୁ ଗୋଟେଇ ଖାଉଛି ହେଲେ ଯାଚିଦେଲେ ମନା କରୁଛି ।

ପ୍ରତୀକ ମୁଁ ଅଳିଆରୁ ଖାଇବା ଗୋଟେଇ ଖାଏ କିନ୍ତୁ ଅଳିଆ ଖାଦ୍ୟ ଖାଏନି । ତୁମର ସେ ଅଳିଆ ତୁମ ପାଖରେ ରଖ ନହେଲେ ଏଇ ଡଷ୍ଟବିନ୍‌କୁ ପକେଇଦିଅ...

ବିମଳ ସେଇଠି ତା' ପାଖରେ ଥୋଇ ଦେଇଯାଅ ସେ ବଳେ ଖାଇବ । ପ୍ରବୀର ପୁଡ଼ିଆ ଥୋଇ ଚାଲିଗଲା ।

ପ୍ରବୀର ଏଇଠି ରହିଲା ଭୋକ ହେଲେ ଖାଇବୁ ।

(ପ୍ରସ୍ଥାନ ଉଦ୍ୟତ)

ପ୍ରତୀକ ହୋ... ହୋ ବାବୁ...

ଭୋଳା (ଭୋକିଲା)...(ପ୍ରବୀର ଅନେଇଲା)

ପ୍ରତୀକ ଏଇଟା ଏଇଠି ପଡ଼ିଲା (ଡଷ୍ଟବିନ୍‌କୁ ପକେଇଲା) ତୁମ ପୁଣ୍ୟ ଏବେ ଡଷ୍ଟବିନ୍‌କୁ ଗଲା ।(ହସିଲା)

ବିମଳ ଏମିତି କାହିଁକି କଲ ?

ପ୍ରତୀକ ଦାନ କଲେ ଦାତାର ଅହଂକାର ବଢ଼େ ଆଉ ଗ୍ରହୀତାର ଋଣର ଭାର...କିନ୍ତୁ ଡଷ୍ଟବିନ୍ ଭିତରେ । ଦାତା ଗ୍ରହୀତା ? ସବୁ ସଂପର୍କ ସେଠି ଏକାକାର ହୋଇଯାଏ । ମଶାଣିର ଜୁଇ ଭଳି ସେଠି ଦେହର ସମସ୍ତ ଅତୀତ ବର୍ତ୍ତମାନର ପାପ ଆଉ ପୁଣ୍ୟ ଜଳିପୋଡ଼ି ପାଉଁଶ ହୋଇଯାଏ । ତା'ପରେ ଦେହ ଆଉ ପାଉଁଶର ପାର୍ଥକ୍ୟ ଖୋଜିଲେ ମିଳେନା ।

ବିମଳ କିନ୍ତୁ ଆତ୍ମାର ପାପ ପୁଣ୍ୟ ତ ଅତୁଟ ରହିଥାଏ ନା...

ପ୍ରତୀକ ଆତ୍ମା...କିଏ ସେ, କେଉଁଠି ରହନ୍ତି କ'ଣ ତାଙ୍କ ପରିଚୟ ? କେମିତି ହେବ ତାଙ୍କ ସହିତ ସାକ୍ଷାତ୍‌କାର ? କହିପାରିବେ ?

ବିମଳ କେଜାଣି...ହୁଏତ ବା ମୃତ୍ୟୁପରେ...

ପ୍ରତୀକ (ହସିଛି) ମୃତ୍ୟୁପରର ଜୀବନ କିଏ ବା ଦେଖିଛି ?

ବିମଳ ହୁଏତ ବା ତାହା, ଏକ କାଳ୍ପନିକ ସତ୍ୟ...

ପ୍ରତୀକ ସ୍ୱର୍ଗ ଆଉ ନର୍କ ?

ବିମଳ ତାହା ମଧ୍ୟ ଅନୁରୂପ ଭାବେ ସତ୍ୟ ହୋଇଥାଇପାରେ ।

ପ୍ରତୀକ ସତ କହିଲେ ଆପଣ ଏତେ ସମୟ ବସି କରି ମୋତେ ଦେଖୁଥିଲେ ନା ? କ'ଣ ଭାବୁଥିଲେ ମନେମନେ ।

ବିମଳ (ଅପ୍ରସ୍ତୁତ) ନାଇଁ ସେମିତି କିଛି ନୁହେଁ ।

ପ୍ରତୀକ ମିଛକଥା-ଆପଣଙ୍କ ଆଖି ଆଉ ମୁହଁରେ ମୁଁ କିନ୍ତୁ ଦେଖି ପାରୁଥିଲି ସେଇ ଗୋଟିଏ ଚିତ୍ର ।

ବିମଳ କାହାର ।

ପ୍ରତୀକ ନର୍କର – ଯେମିତି ମୁଁ ସେଇ ନର୍କର ଏକ କୀଟ...ମଣିଷ ଜୀବନ ପାଇ ନର୍କର ଯନ୍ତ୍ରଣାରେ କେମିତି ଛଟପଟ ହେଉଛି । କ'ଣ ହୋଇଥିବ ମୋର ଅତୀତ, ବର୍ତ୍ତମାନ...ଇତ୍ୟାଦି ଇତ୍ୟାଦି ଏଇ ସବୁ ପ୍ରଶ୍ନର ଉତ୍ତର ଖୋଜୁ ଖୋଜୁ ଆପଣ ବି ଯାଇ ସେଇ ନର୍କରେ ପହଞ୍ଚି ସାରିଛନ୍ତି...ନୁହେଁ ?

ବିମଳ କାହିଁ ନା...ତ ?

ପ୍ରତୀକ ଆପଣ ତ ପଢ଼ିଥିବେ ନିଶ୍ଚୟ ଯେ...

"Face is the mirror of the heart"

ବିମଳ ତୁମେ କ'ଣ ପଢ଼ିଛ...

ପ୍ରତୀକ ପଢୁଛି... ସରିନି...

ବିମଳ କେବେ ସରିବ ?

ପ୍ରତୀକ ଜାଣିନି...

ବିମଳ କ'ଣ ପଢୁଛ ?

ପ୍ରତୀକ ଶୂନ୍ୟ ଆଉ ପୂର୍ଣ୍ଣର ଖେଳକୁ...

ବିମଳ କ'ଣ ବୁଝିଲ ?

ପ୍ରତୀକ ବୁଝିବାକୁ ଚେଷ୍ଟା କରି ଦେଖୁଛି ସତ୍ୟ ବି ଏଠି କଡ଼ ଲେଉଟାଏ । ମୃତ୍ୟୁପରେ ଯଦି ଜୀବନ ସତ୍ୟ ହୁଏ ତା'ହେଲେ ମୃତ୍ୟୁ ବି ତ ଚିରନ୍ତନ ସତ୍ୟ ନୁହେଁ ।

ବିମଳ ତା'ହେଲେ ଜୀବନ ସତ୍ୟ...

ପ୍ରତୀକ କିଛି ଭଲ ମଣିଷ ମାନଙ୍କ ପାଇଁ ଜୀବନଟା କେବଳ ବାଣ୍ଟିବାର ଜାଗା ଆଉ କିଛି ଲୋକଙ୍କ ପାଇଁ ଜୀବନଟା କେବଳ ଗୋଟେଇବାର ଜାଗା... ।

ଏଥର ଆପଣ କହନ୍ତୁ କିଏ ଭଲ ଆଉ କିଏ ଭେଲ ?

ପ୍ରତୀକ ସେଥିପାଇଁ ସେକ୍ସପିଅର କହିଥିଲେ, There is nothing good or bad but thinking makes it so as it true.

ବିମଳ ସେ ଭଲ ଭେଲର ଚକ୍କରରେ ପଡ଼ିଲେ ଜୀବନ ସରିଯିବ କିନ୍ତୁ ରାସ୍ତା ସରିବ ନାହିଁ ।

ପ୍ରତୀକ କେମିତି ସରିବ ? ସେ ରାସ୍ତାରେ ଯେ ଅନେକ ଛକ ଅନେକ ବାଙ୍କ ?

ବିମଳ ସେଇ ଛକ ଆଉ ବାଙ୍କର ଗୋଲକ ଧନ୍ଦାରେ ବୁଲୁବୁଲୁ ଜୀବନ ତା'ର ବାଟ ହଜେଇ ଦିଏ ।

ପ୍ରତୀକ ଆଉ ବାଟ ହଜେଇଥିବା ମଣିଷ ଧୀରେ ଧୀରେ ଆଲୋକଠାରୁ ଦୂରେଇ ଯାଉଯାଉ ଅନେକ ଆଲୋକ ବର୍ଷର ଦୂରା ଅତିକ୍ରମ କରିଚାଲିଯାଏ ଅନ୍ଧାର ଭିତରର ଅନ୍ଧାରି ମୁଲକକୁ ।

ବିମଳ ଏତେ କଥା ଯଦି ଜାଣିଛ...

ପ୍ରତୀକ ଡଷ୍ଟବିନ୍ ସାଉଁଟି ବଞ୍ଚୁଛି କାହିଁକି ? ଏଇ ପ୍ରଶ୍ନ ସେତେବେଳଠାରୁ ଆପଣଙ୍କ ମନରେ ଚକ୍କର କାଟୁଛି ଆଉ ଏମିତି ଅନନ୍ତ କାଳ ପର୍ଯ୍ୟନ୍ତ ଚକ୍କର କାଟୁଥିବ ଯଦି ଉତ୍ତର ନ ମିଳେ ।

ଛାଡ଼ନ୍ତୁ ସେ କଥା - ଅସମାହିତ ପ୍ରଶ୍ନକୁ ସମାହିତ ହେବାକୁ ବିଜ୍ଞାନୀ ମଣିଷଙ୍କ ଉପରେ ଛାଡ଼ି ଦିଅନ୍ତୁ, ନିଜେ ଶାନ୍ତି ପାଇବେ ।

ଆପଣ ବରଂ ବସିବସି ମୋବାଇଲ୍‌ରେ ଚାଟ୍ କରନ୍ତୁ ।

ବିମଳ ଠିକ୍ କଥା ମନେ ପକେଇ ଦେଲ...(ଫୋନ୍) କଲା ହାଃଲୋ...ମୁଁ ବସିଛି ପ୍ଲାଟଫର୍ମ ନଂ ୧୨ରେ () ପାଖରେ ଥିବା

ପ୍ରତୀକ ଡଷ୍ଟବିନ୍ ପାଖରେ ।

(ଏତିକିବେଳେ ଭିନ୍ନ ଦିଗରୁ ଜଣେ ବୁଢ଼ାବୁଢ଼ୀ ଭିକ ମାଗିବାକୁ ଆସିଲେ । ଦୁହେଁ ୱେଲ୍ ଡ୍ରେସ୍‌ଡ୍ ବୁଢ଼ା କୋଟ, ଯୋତା, ବାମ ହାତରେ ସାହାରାବାଡ଼ି - ବୁଢ଼ୀ ମଧ୍ୟ କର୍ଟନ ଶାଢ଼ି ପିନ୍ଧି ପଛେ ପଛେ ଚାଲିଛି ।)

ଡଷ୍ଟବିନ୍ ଯାହାସବୁ ଦେଖାଯାଏ ସବୁ ସତ୍ୟ ନୁହେଁ । ଯେମିତି ମରୀଚିକା...ଯେମିତି ଇନ୍ଦ୍ରଧନୁର ରଙ୍ଗ...ଯେମିତି ଆକାଶ ଆଉ ପୃଥିବୀର ସଂଯୋଗ...ଯାହାର ନାମ ଦିଗ୍‌ବଳୟ ।

(ଦୁହେଁ ଆସି ବିମଳବାବୁ ପାଖରେ)

ପ୍ରସାଦ Can you help me a ten Rupee please.

ବିମଳ କାହିଁକି ?

ପ୍ରସାଦ NO-Question ...help me a Ten Rupee please.

ବିମଳ Sorry

ପ୍ରସାଦ Idiot, you have wested my time.

ବିମଳ ଜୀବନର ବହୁ ମୂଲ୍ୟବାନ ସମୟ ନଷ୍ଟ କରିସାରିଛ ଆଉ ଏବେ ବି କରୁଛ । ଭିକ ମାଗି । ଯଦିଓ ଜାଣିଛ ଯେ ଭିକ ମାଗିବା ଆଇନତଃ ଅପରାଧ...

ପ୍ରସାଦ I am not a beger ମୁଁ କେବଳ ତୁମ ଠାରୁ ସାହାଯ୍ୟ ଚାହୁଁଛି । ତୁମକୁ ସାହାଯ୍ୟ କରିବାର ସୁଯୋଗ ଦେଉଛି ।

ବିମଳ କିନ୍ତୁ କାହିଁକି ?

ପ୍ରସାଦ ମୋତେ ପ୍ରଶ୍ନ କରିବାର ଅଧିକାର ମୁଁ କାହାକୁ ଦିଏ ନାହିଁ । ନାସ୍ତିକ କେଉଁଠିକାର...ଧର୍ମ ପ୍ରତି ଖାତିର ନାହିଁ । ସ୍କାଉଣ୍ଡେଲ୍

ଭୋଳା (ଭୁକିଲା)

ପ୍ରସାଦ You Animals stop your mouth.

ପ୍ରତୀକ ଆରେ ଚୁପ୍ କର... । ତାକୁ କାମୁଡ଼ିଲେ ତା'ର କିଛି କ୍ଷତି ହେବନି ବରଂ ତୋ' ଜୀବନ ଯିବ ।

ବିମଳ ସେ କିଏ ?

ପ୍ରତୀକ ଜାଣିପାରିଲେ ନାହିଁ । Sofosticated and .... ଭିକାରୀ ।

ବିମଳ ତା' ପଛରେ ସ୍ତ୍ରୀ ଲୋକଟି...

ପ୍ରତୀକ ପତିବ୍ରତା ଗାନ୍ଧାରୀ

ଡଷ୍ଟବିନ୍ ଭାଗ ୨ କିମ୍ୱା ୩ ବି ହୋଇଥାଇପାରେ ।

ପାଣି ଉପରେ ଭାସୁଥିବା ବରଫର ପାହାଡ଼-ଶାନ୍ତ, ସ୍ନିଗ୍ଧ, କୋମଳ, ତା' ଦେହରେ ହାତ ମାରିଦେଲେ ଟାଇଟାନିକ୍ ଭଳି ଜାହାଜର ଅସ୍ତିତ୍ୱ ବି ଲୋପପାଇ ଯାଇପାରେ... ।

ବିମଳ ସେମାନଙ୍କର କ'ଣ ଆଉ କେହି ନାହିଁ ?

ପ୍ରତୀକ ପୁଣି ପ୍ରଶ୍ନ - ପ୍ରଶ୍ନ ପଚାରିବାର ଅଭ୍ୟାସଟା ଛାଡ଼ନ୍ତୁ...

ବିମଳ ସେ ମୋତେ ଏମିତି ବାରୟାର ଚାହୁଁଛି କାହିଁକି ?

ପ୍ରତୀକ — ଅହମିକା ଇଚ୍ଛନ୍ତି ଦାମ୍ଭିକେ, ହସ୍ତେ ରଖିବାକୁ
ସମସ୍ତଙ୍କ ଭାଗ୍ୟ ଡୋରି
ନିଜ ଭାଗ୍ୟ ଡୋରି କାଳ ହସ୍ତେ ବନ୍ଧା
ପକାନ୍ତି ହେଳେ ପାଶୋରି ।

ଅନ୍ୟମାନେ ବିନା ପ୍ରଶ୍ନରେ ତାଙ୍କ ହାତକୁ ଦଶଟଙ୍କା ବଢ଼େଇ ଦେଉଛନ୍ତି ତ' ସେଇ କଥା ଆପଣଙ୍କୁ ଦେଖେଇ ଦେବାକୁ ଚାହୁଁଛନ୍ତି ?

ବିମଳ — ଲୋକେ ଏମିତି ଅପ୍ରାସଙ୍ଗିକ ଦାନ କରନ୍ତି କାହିଁକି ?

ପ୍ରତୀକ — ଧର୍ମ ଗୋଟେଇ ଧାର୍ମିକ ହେବାକୁ ସମସ୍ତଙ୍କର ଇଚ୍ଛା । ଟଙ୍କା ଦି'ଟଙ୍କା ଦାନ କରି ଯଦି ଧର୍ମ ମିଳିପାରୁଛି, ତା'ହେଲେ ତା' ଠାରୁ ଶସ୍ତା ପଦାର୍ଥ ଆଜିର ଦୁନିଆରେ ଆଉ କ'ଣ ବା ଅଛି କହିଲେ ?

ବିମଳ — କିନ୍ତୁ ସେ ତ ଅନ୍ଧ ନୁହେଁ କି କଣା, ଛୋଟା ବି ନୁହେଁ ।

ପ୍ରତୀକ — ସେ କୋଟିପତି, ୩ଟା ଫ୍ଲାଟ୍ ଅଛି, ମେଟ୍ରୋ ଷ୍ଟେସନ୍‌ରେ କାର୍ ରଖି ଏଠିକି ଭିକ ମାଗିବାକୁ ଆସେ । ଦିନକୁ ରୋଜଗାର ଅତି କମ୍‌ରେ ୮ / ୧୦ ହଜାର ଟଙ୍କା ।

ବିମଳ — କ'ଣ କହୁଛନ୍ତି ?

ପ୍ରତୀକ — ଲୋଭ ହେଉଛି କି, କରିବେ ଏ କାମ ?

ବିମଳ — (ଚମକି) ଏଁ ନା ନା...ଅସମ୍ଭବ ।

ପ୍ରତୀକ — ତା'ହେଲେ ପିତାମହ ଭୀଷ୍ମଙ୍କ ଭଳି ଚୁପ୍‌ଚାପ୍ ବସନ୍ତୁ ଆଉ ଦେଖନ୍ତୁ । କେମିତି ଆପଣଙ୍କ ଆଖି ଆଗରେ ଧର୍ମର ବସ୍ତ୍ରହରଣ ହେଉଛି । କିନ୍ତୁ ହୁସିଆର । ପ୍ରତିବାଦ କରିବାର ଚେଷ୍ଟା କରିବେ ନାହିଁ । ଫଳ ବିଷମୟ ହୋଇପାରେ ।

ପ୍ରସାଦ — (ଦୂରରୁ ଦେଖେଇ ଶୁଣେଇ କହିବାକୁ ଆରମ୍ଭ କରେ) କିଏ ପାଠପଢ଼ି ଶିଖେ, କିଏ ଦେଖି ଶୁଣି ଶିଖେ, କେହି କେହି ଅନଭୂତିରୁ ଶିଖନ୍ତି । ଆଉ କିଛି ନାସ୍ତିକ ମୂଢ଼ମତି ମଣିଷ ଅଛନ୍ତି । ଏ ସଂସାରରୁ କିଛି ବି ଶିଖନ୍ତି ନାହିଁ ।

(ବିମଳ ନିଜ ପକେଟ୍‌ରୁ ଫୋନ୍ କାଢ଼ିଲା ଓ ପୁଅକୁ ଫୋନ୍ ଲଗାଇଲା ଏତିକି ବେଳେ ପ୍ରସାଦ ଆସି ଫୋନ୍‌ଟି ଛଡ଼େଇ ନେଲା ।)

ପ୍ରସାଦ — କାହାକୁ ଫୋନ୍ କରୁଛୁ ? କ'ଣ ପୋଲିସ୍‌କୁ ? ମୋତେ ଆରେଷ୍ଟ କରିବାକୁ ? ଭିକ ମାଗିବା ଅପରାଧ । ଏକଥା ମୁଁ ଜାଣେ । ଆଇନ୍‌ରେ ଅଛି । ସେଇଥିପାଇଁ ତ ମୁଁ ଭିକ ମାଗୁନି ସାହାଯ୍ୟ ମାଗୁଛି । ତୋ' ଆଖି କ'ଣ ଫୁଟିଯାଇଛି - ତୁ କ'ଣ ଦେଖିପାରୁନୁ ଯେ ଏ ଦୁନିଆରେ । ମନ୍ଦିରରେ, ଷ୍ଟେସନ୍‌ରେ, ରାସ୍ତାଘାଟରେ ମାଳମାଳ ଭିକାରୀ । ପୋଲିସ୍ ପାଖରେ ଆହୁରି ଅନେକ ବଡ଼ ବଡ଼ କାମ ଅଛି ବୁଝିଲୁ ଖାଲି ଭି.ଆଇ.ପି. ଆଉ ଭି.ଭି.ଆଇ.ପି.ଙ୍କ ସେବା କରୁକରୁ ତାଙ୍କୁ ସମୟ ମିଳୁନି ତୋ' କମ୍ପ୍ଲେନ ଶୁଣିଲେ ସେମାନେ ଏଠିକି ଧାଇଁ ଆସିବେ ନୁହେଁ । ଏଇଟା ଦିଲ୍ଲୀ - ଓଡ଼ିଶାରୁ ଆସିଛୁ ଦେଖି ଚାହିଁ ଚଳିବୁ । ଶୁଣ ତୁ ଫୋନ୍ କଲେ କେହି ଆସିବେ ନାହିଁ କିନ୍ତୁ ମୁଁ ଥରେ ଫୋନ୍

କଲେ ତୁ ଏଇ ରେଳଲାଇନ୍ କଡ଼ରେ ଅଚିହ୍ନା ଶବ ହୋଇ କାଉ କୁକୁରଙ୍କର ଆହାର ହେବୁ ବୁଝିଲୁ ।

ବିମଳ ପୋଲିସ୍‌କୁ ନୁହେଁ । ପୁଅକୁ ଫୋନ୍ କରୁଥିଲି ।

ପ୍ରସାଦ ମିଛ କଥା... ।

ବିମଳ ନମ୍ବର ଦେଖୁନ... ? (ପ୍ରସାଦ ନମ୍ବର ଦେଖୁଛି)

ପ୍ରସାଦ Give me a Ten Rupee Please...

(ଦଶଟଙ୍କା ଦେଇଛି ଓ ପ୍ରସାଦ ଫୋନ୍ ଫେରେଇ ଦେଇଛି)

ପ୍ରସାଦ ମିଛଟାରେ ଆଙ୍ଗୁଳି ତେଢ଼ା କରିବାକୁ ପଡ଼ିଲା ଯାହା । (ଚାଲିଗଲା)

ବିମଳ (ଦୀର୍ଘଶ୍ୱାସ ଛାଡ଼ି) ଆରେ ବାପ୍‌ରେ ବାପ୍...

ପ୍ରତୀକ ଦିଲ୍ଲୀ ଲଡୁ - ଯୋ ଖାୟା ପସ୍ତାୟା । ଯୋ ନେହି ଖାୟା ୱ ଭି ପସ୍ତାୟା (ହସିଲା)

(ଏତିକିବେଳେ ଅନ୍ଧ ପିଲାଟେ ଡବା ଧରି ଭିକମାଗି ଆସିଲା ।)

ଭାନୁଆ ଅନ୍ଧାକୋ କୁଛ ଦିଜିଏ ସାହାବ । ଭଗବାନ ଆପକା ଭଲା କରେଗା । (ବିମଳ ପକେଟରେ ହାତ ପୂରାଇଲା ।)

ପ୍ରତୀକ କ'ଣ ଅନ୍ଧଟାଏ ଦେଖୁ ଦେଖୁ ଧର୍ମ ଗୋଟେଇବାର ଲୋଭ ଅସମ୍ଭାଳ ହେଲାଣି ବୋଧହୁଏ ।

ବିମଳ ବିଚରା ଅନ୍ଧଟାଏ । ଈଶ୍ୱର ତାକୁ ଏମିତି ଅନେକ ଦୁଃଖ ଦେଇଛନ୍ତି ।

ପ୍ରତୀକ ଠିକ୍ କଥା ଆଜ୍ଞା (ଅନ୍ଧର ଡବାରୁ ୧୦ ଟଙ୍କା ଉଠେଇ ନେଲା ।)

ଭାନୁଆ ହଇବେ ଶଳା ଅନ୍ଧର ଡବାରୁ ପଇସା ଚୋରି କରୁଛୁ । ତୋତେ ଲାଜ ଲାଗୁନି ।

ପ୍ରତୀକ ଚଷମା ପିନ୍ଧି ମିଛଟାରେ ଅନ୍ଧ ଅଭିନୟ କରୁଛୁ ତୋତେ ଲାଜ ଲାଗୁନି ।

ଭାନୁଆ ଆବେ ଚିହ୍ନିଛୁ ମୋତେ, ଜାଣିଛୁ ମୁଁ କିଏ ?(ଦୂରରୁ ପ୍ରସାଦ)

ପ୍ରସାଦ କିରେ ଭାନୁଆ...ବେପାର କେମିତି ଚାଲିଛି ?

ଭାନୁଆ ମାଫ୍ କରିବେ ସରକାର । ଆପଣ ଏଇଠି ଅଛନ୍ତି ବୋଲି ମୁଁ ଜାଣିନଥିଲି ?

ପ୍ରସାଦ ଜାଣିବୁ କେମିତି ତୁଟାତ ଅନ୍ଧଟାଏ ନା...ଆ...ଏଠିକି ଆସ ତୋତେ ଜଣେଇ ଦେଉଛି ।

(ଭାନୁଆ କାନ୍ଦିକାନ୍ଦି ପ୍ରସାଦ ପାଖକୁ ଗଲା)

ଭାନୁଆ ମୋର ଭୁଲ୍ ହୋଇଗଲା ସରକାର ।

ପ୍ରସାଦ କାନ ଧରି ଆଣ୍ଠୁ...ଡବାରେ ଆଉ ପକେଟରେ ଯେତେ ପଇସା ରଖୁଛୁ ବାହାର କର । ଜାଣି ସିଆଣିଆ ହେଉଛୁ ନୁହେଁ । (ଭାନୁଆ ସେମିତି କଲା ।)

ଭାନୁଆ ମରିଯିବି ବୋସ୍ । ଏଥର ମାଫ୍ କର ।

ପ୍ରସାଦ ଭାଗ ଶାଳା...ଆଉ ଦିନେ ଏ ଭୁଲ୍ କରିବୁ ତ ଶଳାର ଆଖି ଫୁଟେଇ ଦେବି । ତା'ପରେ ଅସଲି ଅନ୍ଧ ହୋଇ ବୁଲିବୁ ଜାଣିଥା...(ଭାନୁଆ ଧାଇଁ ପଳେଇଲା)

ବିମଳ କି ସାଂଘାତିକ ମଣିଷ, ପୁଣି ଭିକାରୀ ।

ପ୍ରତୀକ ମଣିଷ ନୁହେଁ ରାକ୍ଷସ...ତା' ଠାରୁ ଆମର ଏଇ ଭୋଳା ଢେର୍ ଭଲ । ଯାର ଦୋସ୍ତି କଥା ତ ଛାଡ଼ ଯାର ଦୁଶମନି ବି ତା' ଠାରୁ ବହୁତ ଭଲ । ସେ କାମୁଡ଼ିବା ଆଗରୁ ଭୁକେ ବହୁତ ଭୁକେ ବାରମ୍ବାର ସତର୍କ କରାଇଦିଏ । ତା'ପରେ ଦରକାର ପଡ଼ିଲେ କାମୁଡ଼େ । କିନ୍ତୁ ସେ ହେଉଛି ସୁଗର କୋଟେଡ଼୍ ବ୍ଲେଡ଼୍ କେତେବେଳେ ତଣ୍ଟି ଉପର ଦେଇ ଚାଲିଯାଏ ଜଣାପଡ଼େନି । ଦେହରୁ ରକ୍ତ ବାହାରିବା ଆଗରୁ ଜୀବନ ବାହାରି ଯାଏ ।

(ଘୋଷଣା)

ଘୋଷଣା ଯାତ୍ରୀଗଣ କୃପୟା ଧ୍ୟାନଦେ ଅମୃତସର ସେ ଦିଲ୍ଲୀ ଆନେବାଲୀ ରାଜଧାନୀ ଏକ୍ସପ୍ରେସ୍ ୧୨ ନଂ ପ୍ଲାଟଫର୍ମ ପର ଆରହୀହେ । (ଷ୍ଟେସନର କୋଳାହଳ)

ନେପଥ୍ୟରୁ ସ୍ମିତା: ଧର ଧର ଚୋର ମୋ ଭ୍ୟାନିଟ୍ ନେଇ ପଳେଇଲା...

(ଧାଇଁ ଆସିଲା ଚୋର ବ୍ୟାଗ୍‌ଟା ଡଷ୍ଟବିନ୍‌ରେ ପକେଇଦେଇ ପଳେଇଲା ପଛେ ପଛେ ପୋଲିସ୍)

ଡଷ୍ଟବିନ୍ ଏବେ ଆରମ୍ଭ ହେଲା ଚୋର ପୋଲିସ୍‌ର ଖେଳ ।

ପୋଲିସ୍ ଆବେ ରୁକ୍ ଯା...ନହେଲେ ମାରିଦେବି... ।

ଭାଗ୍ ଗୟା ଶାଲା । ମୋତେ ଦେଖି ଡରିଗଲା । କହାଁ ଗୟା ?

ବିମଳ ସେଇ ଆଡ଼କୁ ଗଲା । ଭ୍ୟାନିଟ୍ ବ୍ୟାଗ୍‌ଟା...

ପୋଲିସ୍ ଆବେ ଚୁପ୍...ଜିତନା ପୁଛାହେ ଉତନାହି ଜାବାବ ଦୋ... ଉସକେ ଆଗେ ଗୋଟିଏ ଅଧିକା ଶବ୍ଦ କହିବୁ ତ ତ ଜିଭ ଓଟାରିନେବି ମୁଁ କିଏ ଜାଣିଛୁ ତ...ପୋଲିସ୍...ରାଜଧାନୀ ପୋଲିସ୍ । ବାକି ସବୁ ଏ ପୋଲିସ୍ ଆଖି ଦେଖିଛି । ମୋତେ କ'ଣ ବନ୍ଧୁ ଭାବିଛୁ... । ଜ୍ୟାଦା ସ୍ମାର୍ଟ ମତ ବନୋ...ନେହିଁତୋ ହୱାଲାତର ହାୱା ଖାଇବୁ ବୁଝିଲୁ... ।

(ଧୀରେ ଧୀରେ ଡଷ୍ଟବିନ୍ ଆଡ଼କୁ ଗଲା ଦେଖିଲା ବିମଳ ତାକୁ ଅନେଇଛି ।) ଯାଡ଼େ କ'ଣ ଦେଖୁଛୁ ? ଡଷ୍ଟବିନ୍‌କୁ ନା ପୋଲିସ୍‌କୁ... ? ଜୀବନରେ କେବେ ପୋଲିସ୍ ଦେଖିନୁ... ? ଦେଖିବୁ ? ଆବେ ତୋ' ସାମନାରେ ଏତେ ବଡ଼ ସଂସାର ପଡ଼ିଛି । ତାକୁ ଦେଖୁନୁ, ତାକୁ ପଢୁନୁ । ନହେଲେ ନିଜକୁ ଦେଖ, ତୋ' ଜୋତାକୁ ଦେଖ, ତୋ' ନଖ ଦେଖ ନ ହେଲେ କିଛି ନ ହେଲେ ବସି ବସି ତୋ' ଆଙ୍ଗୁଳି ଗଣୁନୁ... ଯେ ସବ ଛୋଡ଼ ଛାଡ଼ କେ ମେରେ ବର୍ଦିକେ ପିଛେ କ୍ୟୁଁ ପଡ଼ଗୟା ହେ...ମୁଝେ ପ୍ୟାର୍ ହୋ ଗୟା କ୍ୟା...? ଆବେ ଚୁପ୍...(ବିମଳ ଅନ୍ୟ ଆଡ଼େ ଅନେଇଲା...) (ପୋଲିସ ଡଷ୍ଟବିନ୍ ଭିତରେ କିଛି ଖୋଜିଲା ।)

ପ୍ରତୀକ ଭୋଳା...ପୋଲିସ୍ ଖୋଜୁଛି । ଚୋରକୁ ନୁହେଁ... ଚୋରିମାଲ୍‌କୁ ।

ଭୋଳା ବ୍ୟାଗ୍‌ଟାଏ ତ । ଏତେ ସମୟ କାହିଁକି ଲାଗୁଛି ?

ପ୍ରତୀକ ବ୍ୟାଗ୍ ଅପେକ୍ଷା ବ୍ୟାଗ୍‌ର ପକେଟ୍ ସବୁ ଖୋଜିବାକୁ ସମୟ ଲାଗିବ ନା ନାହିଁ ?

ଭୋଳା ଦୁର୍ଗନ୍ଧ ଭିତରେ...

ପ୍ରତୀକ — ପୈସା କ୍ୟା ନକରେ କାମ... । ପୈସା ମିଳିଲେ ଦୁର୍ଗନ୍ଧ ବି ସୁଗନ୍ଧ ପାଲଟିଯାଏ ।

ସ୍ମିତା — ପୋଲିସ୍ ବାବୁ, ପ୍ଲିଜ୍ ହେଲ୍‌ପ ମି...ଚୋର ମୋ ଭ୍ୟାନିଟ୍ ନେଇ ପଳେଇଲା ଟ୍ରେନ୍ ଛାଡ଼ିବା ଛାଡ଼ିବା ଉପରେ । ମୋ ଟିକଟ, ଟଙ୍କା ସବୁ ସେଇ ବ୍ୟାଗ୍‌ରେ...ପ୍ଲିଜ୍

ପୋଲିସ୍ — ସେଇଆ ତ କରୁଛି । ତୁମକୁ ଦେଖାଯାଉନି କି ?

ସ୍ମିତା — କ'ଣ ପାଇଲେ ?

ପୋଲିସ୍ — (ବ୍ୟାଗ୍ ଦେଖାଇ) ଏଇଟା ତ ? ନିଅନ୍ତୁ, ଦେଖି ନିଅନ୍ତୁ ।

ସ୍ମିତା — ଧନ୍ୟବାଦ...

ପୋଲିସ୍ — ସବୁ ଠିକ୍‌ଠାକ୍ ଅଛି ତ ?

ସ୍ମିତା — ଥାଙ୍କ ୟୁ, ହଁ ଅଛି... (ବ୍ୟାଗ୍ ଦେଖିଲା) ।

ପୋଲିସ୍ — କ'ଣ ଅଛି, କ'ଣ ନାହିଁ ।

ସ୍ମିତା — ଟିକଟ ଅଛି...କିନ୍ତୁ ପର୍ସ ନାହିଁ କି ପଇସା ନାହିଁ ।

ପୋଲିସ୍ — ସେଇ ଶଳା ଚୋର ନେଇ ପଳେଇଥିବ ? ଠିକ୍ ଅଛି ମ୍ୟାଡ଼ାମ୍ ଆପଣ ମୋ ସାଙ୍ଗରେ ପୋଲିସ୍ ଷ୍ଟେସନ୍ ଚାଲନ୍ତୁ ଖଣ୍ଡେ ଏଫ୍. ଆଇ. ଆର୍. ଲେଖିଦେବେ । ତା'ପରେ ଦେଖିବେ ଶଳା ଯିବ କୁଆଡ଼େ ? ଆଜି ନ ହେଲେ କାଲି ନିଶ୍ଚୟ ଧରାପଡ଼ିବ । ଆଉ ଆପଣଙ୍କ ଫୋନ୍ ନଂ ବି ସେଥିରେ ଲେଖିଦେବେ ମୁଁ ତାକୁ ଧରିବା ମାତ୍ରେ ଆପଣଙ୍କୁ ଫୋନ୍ କରି ଜଣାଇବି ।

ସ୍ମିତା — ନାଇଁ ଥାଉ ।

ପୋଲିସ୍ — ଆଉ ସେଥିରେ ଏକାଉଣ୍ଟ ନଂ ବି ଲେଖିଦେବେ । ଟଙ୍କା ରିକଭରୀ ହେଲା ମାତ୍ରେ ଆପଣଙ୍କ ଏକାଉଣ୍ଟକୁ ଟ୍ରାନସଫର କରିଦେବି । ଟ୍ରଷ୍ଟ ମି । ଇଏ କ୍ୟାପିଟାଲ୍ କା ପୋଲିସ୍ ହୈ । ସ୍ମାର୍ଟ ପୋଲିସ୍ । (ଏତିକିବେଳେ ଟ୍ରେନ୍ ହର୍ଣ୍ଣ ମାରିଲା ।)

ସ୍ମିତା — ନା ନା ଧନ୍ୟବାଦ । ଟିକେଟ୍‌ଟା ମିଳିଗଲା ସେତିକି ଯଥେଷ୍ଟ । ଟଙ୍କା ଗଲେ ଯାଉ ସେ ଏଫ୍.ଆଇ.ଆର୍‌ରେ ମୋର ପଡ଼ିବାର ନାହିଁ । (ପ୍ରସ୍ଥାନ)

ପୋଲିସ୍ — ଆରେ ମ୍ୟାଡ଼ାମ୍ ଆପଣଙ୍କ ଭଳି ଅଧିକାଂଶ ଲୋକ ଏଫ୍.ଆଇ.ଆର୍ କରୁ ନାହାନ୍ତି ବୋଲି ଏ ଚୋରମାନଙ୍କ ମୁହଁ ବଢ଼ି ଯାଉଛି । ଠିକ୍ ଅଛି...(ଡଷ୍ଟବିନ୍‌ରୁ ପର୍ସ କାଢ଼ି ପକେଟ୍‌ରେ ରଖିଲା ।) ଯାଏଁ ହାତଟା ଧୋଇ ପକାଏ ।

ନଖିଆ — (ଚୋରର ପ୍ରବେଶ) ନମସ୍ତେ ସାହେବ । ଫିପ୍‌ଟି ଫିପ୍‌ଟି ।

ପୋଲିସ୍ — ସେଇ କ୍ୟାବିନକୁ ଯାଆ ସେଇଠି ମିଳିବ । ଫିପ୍‌ଟି ଫିପ୍‌ଟି, ଚା', କଫି, କୁର୍‌କୁରେ ସବୁ ସେଇଠି ମିଳିବ ।

ନଖିଆ — ମୋର ସେ ସବୁ ଦରକାର ନାହିଁ । ମୋତେ ମୋର ଭାଗଟା ଦିଅନ୍ତୁ ।

ପୋଲିସ୍ — କି ଭାଗ ବେ ?

ନଖିଆ ଡ୍ୟାନିଟ୍ ବ୍ୟାଗ୍‌ର ଭାଗ ।

ପୋଲିସ୍ ତୁ ତା'ହେଲେ ଚୋରି କରିଥିଲୁ । ଦେଖିଲୁ ପରା ଯାହାର ବ୍ୟାଗ୍ ତାକୁ ଦେଇଦେଲି ।

ନଖିଆ ମୋତେ ଆଉ ସକାଳୁ ସକାଳୁ ଲଣ୍ଠନ ଦେଖାନ୍ତୁ ନାହିଁ । ତା'ପରେ ଯେଉଁଟା ସେଇ ଡଷ୍ଟବିନ୍‌ରେ କାଢ଼ି ପକେଟ୍‌ରେ ପୁରାଇଲେ ? ସେଇଥିରେ ପରା ଟଙ୍କା ପଇସା ଥିବ ।

ପୋଲିସ୍ କ'ଣ ହେଲା ମୋ ପକେଟ୍ ସର୍ଚ୍ଚ କରିବୁ ନା କ'ଣ ? କି ଯୁଗ ହେଲା ଇଏ ବେଙ୍ଗ କହୁଛି ନାଗ ମୁଣ୍ଡରେ ବସି ନାଗର ସାଜିବ । ଚାଲ ଶଳା ଥାନାକୁ ଚାଲ । ତତେ ଥାର୍ଡ଼ ଡିଗ୍ରୀ ଦରକାର ପଡ଼ିଲାଣି ଦେଖୁଛି ।

ନଖିଆ ତମକୁ ଧର୍ମ ସହିବ ନାହିଁ ହାବିଲଦାର ସାହେବ ।

ପୋଲିସ୍ ଯା ଯା ମତେ ଧର୍ମ ଶିଖାଇଲା । ହଜାର ଚୁହା ଖାକେ ବିଲ୍ଲି ହଜ୍‌କୋ ଚଲ୍ଲି । ଆବେ ! ପ୍ରତିଦିନ ଅନ୍ଧାରରୁ ଉଠି ଯମୁନା ନଈରେ ଗାଧୋଇ, ଯମୁନା ମାଟିକୁ ତିଳକ କରି, ପୂଜାପାଠ ସାରି ମୁଁ ଡିଉଟିକୁ ଆସୁଛି । ଏ ବାରବୁଲା ମୋତେ ପୁଣି ଧର୍ମ ଅଧର୍ମର ପାଠ ପଢ଼େଇବ । (ଏହା ଭିତରେ ପୋଲିସ୍‌ର ଦୃଷ୍ଟି ବେଞ୍ଚ ପଛପଟ ଲୁଚିଥିବା ପ୍ରତୀକ ଉପରେ ପଡ଼ିଛି ।) ହେ ସେଠି ଲୁଚିଲୁଚି କ'ଣ କରୁଛୁ ?

ପ୍ରତୀକ ଖାଉଛି ପରଟା ।

ପୋଲିସ୍ କେଉଁଠୁ ଆଣିଲୁ ?

ପ୍ରତୀକ ଚୋରି କରିନି କି ମାଗିଆଣିନି ସାର୍ । ଆଇ ହାଭ୍ କଲେକ୍ଟେଡ଼ ଇଟ୍ ଫ୍ରମ ଦିସ୍ ଡଷ୍ଟବିନ୍ ସାର୍ । ଯଦି ବିଶ୍ୱାସ ହେଉନି (ବିମଳକୁ ଦେଖାଇ) ତାକୁ ପଚାରନ୍ତୁ । ଆଉ କାହାକୁ ପଚାରନ୍ତୁ ସାର୍ । ମୋତେ ଯଦି ପଚାରିବେ ମୁଁ କହିବି ମୁଁ ଗୀତା ଛୁଇଁ ଶପଥ କରି କହୁଛି, ମୁଁ ଯାହା କହିଛି ସତ କହିଛି, ସତ ବ୍ୟତୀତ ଟିକିଏ ବି ମିଛ କହି ନାହିଁ । ଆଇ ଏମ୍ଏ ପିୟର୍ ମ୍ୟାନ୍, ପିୟର୍ ଲାଇକ୍ ଇୟର ୟୁନିଫର୍ମ ଆଣ୍ଡ ଏଚ୍ ଟୁ ଓ ଠୁ ।

ପୋଲିସ୍ (ହସି) ବସ୍ ବସ୍ । ଖାଇବୁ ଯଦି ଖା ।(ବିମଳ ପାଖକୁ ଯାଇ) ଆଁ କରି ଚାହିଁଛୁ କ'ଣ କିଛି ବୁଝିଲୁ ।

ବିମଳ କେଉଁ କଥା ?

ପୋଲିସ୍ ଇଂରାଜୀ ପଢ଼ିଛୁ ?

ବିମଳ ହଁ ।

ପୋଲିସ୍ କ'ଣ ସବୁ ସେ ଭଡ଼ଭଡ଼ କରି ଗପିଗଲା ମୋତେ ଟିକିଏ ବୁଝେଇଲୁ ।

ବିମଳ ସେ କହିଲା, ସେ ତା' ଖାଇବା ଡଷ୍ଟବିନ୍‌ରୁ ଗୋଟେଇ ଆଣିଛି । ସେ ଜଣେ ଖାଣ୍ଟି ମଣିଷ । ଆପଣଙ୍କ ୟୁନିଫର୍ମ ଆଉ ଏଚ୍ ଟୁ ଓ ଭଳି ପୁରାପୁରି ଖାଣ୍ଟି ।

ପୋଲିସ୍ ଓ ଏମିତି କଥା କହିଲା । ମୋ ବଦିକୁ ଠିକ୍ ଚିହ୍ନିଛି । ହେଲେ ସେ ଏଚ୍ ଟୁ ଓ କ'ଣ କିରେ ?

ବିମଳ ଏଚ୍ ଟୁ ଓ ମାନେ ପିୟର୍ ପାଣିକୁ ବିଜ୍ଞାନ ଭାଷାରେ ଏଚ୍ ଟୁ ଓ କହନ୍ତି । ମାନେ ଗୋଟିଏ ଅମ୍ଳଜାନ ଓ ଦୁଇଟି ହାଇଡ୍ରୋଜେନ ଅଣୁକୁ ମିଶି ପାଣି ହୁଏ, ତାକୁ ଏଚ୍ ଟୁ ଓ କହନ୍ତି ।

ପୋଲିସ୍ ସେଇଟା କ'ଣ ମୁଁ ଜାଣିନି । ସବୁ ଏଇ ଦଣ୍ଡାର କରାମତି । ଏଇ ଦଣ୍ଡା ଦେଖୁ ଦେଖୁ ତା'ର ଅସଲ ରୂପଟା ବାହାରି ପଡ଼ିଲା ।

ବିମଳ ବୁଝିପାରିଲିନି ।

ପୋଲିସ୍ ପାଠ ଶାଠ ପଢ଼ି ବେଟା ଦିଲ୍ଲୀ ଆସିଥିଲା ଆଇ.ଏ.ଏସ୍ କୋଚିଂ ନେବାକୁ । ଦିନେ ସନ୍ଧ୍ୟାରେ ରେଷ୍ଟୁରାଣ୍ଟରେ ବସି ଖାଇଲା ବେଳେ ସେଇଠି ଟେରୋରିଷ୍ଟ ଆଟାକ୍ ହେଲା । ଧାଁ ଦୌଡ଼ ଭିତରେ ତା' ପର୍ସ ଓ ଆଇକାର୍ଡ଼ ହଜିଗଲା । ପୋଲିସ୍ ତାକୁ ଟେରୋରିଷ୍ଟ ଭାବି ଉତ୍ତମ ମଧ୍ୟମ ଏମିତି ସେକିଲା ଯେ, ସେଇ ଦିନୁ ସେ ଅର୍ଦ୍ଧ ପାଗଳ । ଯାଚିଲେ ଖାଉନି, କି ବାଢ଼ି ଦେଲେ ଖାଉନି, ଗୋଟେଇ ଗୋଟେଇ ଖାଉଛି, କୁକୁର ଭଳି ବଞ୍ଚିଛି, କୁକୁର ସାଙ୍ଗରେ ରହୁଛି ।

ବିମଳ କାହା ଉପରେ ପ୍ରତିଶୋଧ ନେଉଛି କେଜାଣି ? ଭାଗ୍ୟ ଉପରେ ନା ନିଜ ଉପରେ ?(ଦେଖାଗଲା ଡାଉନ୍ ଷ୍ଟେଜ୍‌ରେ ପ୍ରତୀକ ଆଉ ଭୋଳା ଗଡ଼ାଗଡ଼ି ହୋଇ ଖେଳୁଛନ୍ତି ।)

ପୋଲିସ୍ ସେଥିରେ ବି ପୋଲିସର ବା ଦୋଷ କ'ଣ ?

ବିମଳ ପୋଲିସ୍ ତା'ର ପରିଚୟ ଜାଣିଲା କେତେବେଳେ ।

ପୋଲିସ୍ ରେଷ୍ଟୁରାଣ୍ଟ ସର୍ଚ୍ଚ କଲାବେଳକୁ ତା'ର ମନିପର୍ସ ଓ ଆଇକାର୍ଡ଼ ମିଳିଲା ।

ବିମଳ ସେ ପର୍ଯ୍ୟନ୍ତ କ'ଣ ପୋଲିସ୍ ଅପେକ୍ଷା କରିପାରିନଥାନ୍ତା ।

ପୋଲିସ୍ ପୋଲିସ୍‌ର ଅନ୍ୟ କାମ ଅଛି ନା ନାହିଁ । (ଦେଖାଗଲା ପ୍ରତୀକ ଆଉ ଭୋଳାର ଦୁଇଟି ଛାଇ ସାଇକ୍ଲୋରାମା ପରଦା ଉପରେ ଭାସି ଉଠିଲା ।)

ବିମଳ ଦେଶ ଗୋଟିଏ ଇନ୍‌ଟାଲଏକଚୁଏଲ୍ ହରାଇଲା ।

ପୋଲିସ୍ କ'ଣ କହିଲ ?

ବିମଳ ତା'ପରେ କ'ଣ ହେଲା ?

ପୋଲିସ୍ ତା'ପର ଖବର କିଏ ରଖିଛି ? କାହାକୁ ସମୟ ଅଛି ମୁଁ ଯାଏଁ ସେପଟୁ ଆଡୁ ବୁଲି ଆସେ । (ପ୍ରସ୍ଥାନ)

(ପ୍ଲାଟଫର୍ମକୁ ଆସିଲେ ଜଣେ ପୁରୁଷ ହାତରେ ଟ୍ରଲି ବ୍ୟାଗ୍ ଓ କାନ୍ଧରେ ଲାପ୍‌ଟପ୍ ବ୍ୟାଗ୍ ପଛରେ ଜଣେ ଝିଅ ତା' ହାତରେ ମଧ୍ୟ ଭ୍ୟାନିଟ୍ ବ୍ୟାଗ । ଦୁହେଁ ଆସି ବେଞ୍ଚରେ ବସିଲେ ।)

ଡଷ୍ଟବିନ୍ ଏମାନେ ଦି'ଜଣ ଭାରି ଇଣ୍ଟରେଷ୍ଟିଙ୍ଗ କ୍ୟାରେକ୍ଟର ଦେଖିଲେ ଜାଣିବେ । ନ ଜାଣି ପାରିଲେ ପୁଣି ଆସିଲେ ତାଙ୍କ ପରିଚୟ ଦେଇ ଯିବି ।

ପ୍ରିୟଙ୍କା ଏକ୍ସକ୍ୟୁଜ୍ ମି (ପୁରୁଷ ଘୁଞ୍ଚିଗଲା ଦୁହେଁ ବସିଲେ । ଭିତରକୁ ଆସିଲେ ଜଣେ ହିଞ୍ଜଡ଼ା । ତାଳି ମାରି ପଇସା ମାଗୁଥାଏ । ଝିଅକୁ ଯାଇ ମାଗିଲା ।)

| | |
|---|---|
| ମୋନାଲି | ହାଏ ଚିକିନ୍ ଦେ ହେ. ନା ଦଶ ରୁପେୟା (ପୁଅକୁ ମାଗିଲା) ହାଏ ହିରୋ ଦେ ଦେ ନା ଦୋସ୍ତ କେତେ ପ୍ୟାରା ଦିଶୁଛୁ । ଲା ଲା ଦଶ ରୁପେୟା ଦେ ଦେ । |
| ବର୍ଣ୍ଣି | ପୋଲିସକୁ ବୋଲାଉଁ ? |
| ମୋନାଲି | ତେରେ ମେରେ ବିଚ୍ ମୈ ଏ ପୋଲିସ୍ କାହାଁ ସେ ଆ ଗେୟାରେ । ଦେ ଦେ ନା ଦୋସ୍ତ । |
| ବର୍ଣ୍ଣି | ମୁଫତ୍ ମୈ କିଉଁ ମାଙ୍ଗ୍ ରହିହୋ । |
| ମୋନାଲି | ଆଚ୍ଛା ଆଚ୍ଛା ମୁଫତ୍ ମୈ ନେହିଁ ଦେଗା । ତୋ ଲେ ଲେ ଏକ କିସ୍ ଦେ ଦେତିହୁଁ...ଫିର୍ ବିଶ୍ ରୁପେୟା ଲଗେଗା ।(କିସ୍ ଦେବାକୁ ଚାହିଁଲା ବର୍ଣ୍ଣି ତାକୁ ଦଶ ଟଙ୍କା ଦେଇଦେଲା ।) କିଏ ଦେଲା ଦେଖିଲୁ ତ । ତୁ ତ ତୁ ତୋ' ବାପା ବି ଦେଇକି ଯିବ ବୁଝିଲୁ । (ପ୍ରସ୍ଥାନ) |
| ପ୍ରିୟଙ୍କା | ଏମାନେ ଯାତ୍ରୀମାନଙ୍କୁ ବହୁତ ହଇରାଣ କରନ୍ତି । |
| ବର୍ଣ୍ଣି | ଆପଣ କ'ଣ ଓଡ଼ିଆ ? |
| ପ୍ରିୟଙ୍କା | ପ୍ରଥମରୁ ତ ଦଶଟଙ୍କା ଦେଇ ଦେଇଥିଲେ ତ ଚଳିଥାନ୍ତା । ମିଛଟାରେ ଏତେ ଝାମେଲା ହୋଇ ନଥାନ୍ତା । |
| ବର୍ଣ୍ଣି | ଏମାନଙ୍କୁ ଦେଖିଲେ ମୋତେ ଭାରି ଚିଡ଼ା ଲାଗେ । ଅସଭ୍ୟ ଗୁଡ଼ାକ । |
| ପ୍ରିୟଙ୍କା | ଈଶ୍ୱର ଏମାନଙ୍କୁ ଯଥେଷ୍ଟ ଦଣ୍ଡ ଦେଇ ସାରିଛନ୍ତି । ତା'ପରେ ପୁଣି ଆପଣ ଅଭିଶାପ ଦେବାଟା ଠିକ୍ ନୁହେଁ । |
| ବର୍ଣ୍ଣି | ଆପଣ କ'ଣ ଭାବୁଚନ୍ତି ଏମାନେ ସବୁ ସତରେ ହିଞ୍ଜଡ଼ା ? |
| ପ୍ରିୟଙ୍କା | ନୁହେଁ ତ ଆଉ କ'ଣ ? |
| ବର୍ଣ୍ଣି | ଏମାନଙ୍କ ଭିତରୁ ଅନେକ ନକଲି । ଝିଅର ପୋଷାକ ପିନ୍ଧି ହିଞ୍ଜିଡ଼ା ସାଜିଛନ୍ତି ରୋଜଗାର ପାଇଁ । |
| ପ୍ରିୟଙ୍କା | ଆପଣ କୁଆଡ଼େ ଯିବେ ? |
| ବର୍ଣ୍ଣି | କଟକ । ଆପଣ ? |
| ପ୍ରିୟଙ୍କା | ଭୁବନେଶ୍ୱର । |
| ବର୍ଣ୍ଣି | କ'ଣ ଭୁବନେଶ୍ୱରରେ ରହନ୍ତି । |
| ପ୍ରିୟଙ୍କା | ନା ସେଠୁ ଓହ୍ଲାଇ ବରହମ୍ପୁର ଯିବି । ସେଇଠି ମୋ ମାମୁଁ ଘର । ଏକା ଯାଉଥିଲି ତ ସାଙ୍ଗ ଖୋଜୁଥିଲି । ଯାହା ହେଉ ଦେଖା ହୋଇଗଲା । ଆଉ ଚିନ୍ତା ନାହିଁ । ଆପଣଙ୍କ ଘର କ'ଣ କଟକରେ ? |
| ବର୍ଣ୍ଣି | ନା ନା ପାରାଦୀପ ଲାଇନ୍‌ରେ । କନ୍ଦରପୁର (ଚା' ବାଲା ଚା' ବିକି ଆସିଲା ।) |
| ଚା'ବାଲା | ଚା' ଚା' କଫି... |
| ପ୍ରିୟଙ୍କା | ଆଜି କୋହଲା ପାଗକୁ ସୁଲୁସୁଲିଆ ପବନ । ଦେହ ଶୀତେଇ ଉଠୁଛି । ଚା' ପିଇବେ କି ? ଏ ଚା'ବାଲା ଚା' ଦେଲୁ । |

ଚା'ବାଲା ଚା' ନା କଫି ?

ପ୍ରିୟଙ୍କା ମୋର ଚା' ଆପଣଙ୍କର ?

ବର୍ଣ୍ଣି କଫି । (ଚା'ବାଲା ଚା' ଆଉ କଫି ଦେଲା । ବର୍ଣ୍ଣି ପଇସା କାଢ଼ିଲା ।)

ପ୍ରିୟଙ୍କା ମୁଁ ଚା' ଅର୍ଡ଼ର କରିଛି ମୁଁ ପଇସା ଦେବି । ପଇସା ଦେଲା ଚା'ବାଲା ଚାଲିଗଲା । ପ୍ରିୟଙ୍କା ଭ୍ୟାନିଟ୍‌ରୁ ବିସ୍କୁଟ ବାହାର କଲା ନିଜେ ଖାଇଲା ଓ ବର୍ଣ୍ଣିକୁ ଦେଲା ।) ନିଅନ୍ତୁ ଗୋଟିଏ ବିସ୍କୁଟ।

ବର୍ଣ୍ଣି ନା ନା ଏବେ ଲଞ୍ଚ୍ କରି ଆସିଲି ।

ପ୍ରିୟଙ୍କା ଟ୍ରେନ୍‌ରେ ଗଲାବେଳେ କିଏ କ'ଣ ଓପାସ କରି ଘରୁ ବାହାରେ ନା କ'ଣ ? ମୁଁ ବି ପେଟେ ଖାଇକି ଆସିଛି । ଗୋଟିଏ ବିସ୍କୁଟ ଖାଇଲେ ପେଟ ଫାଟିଯିବନି । ନିଅନ୍ତୁ ।

ବର୍ଣ୍ଣି (ହସିହସି) ବାଃ ଆପଣତ ବଢ଼ିଆ ମଜା କରିପାରନ୍ତି ।

ପ୍ରିୟଙ୍କା ମଝିରେ ମଝିରେ ଟିକିଏ ମଜା ନ କଲେ ଜୀବନଟା ରୁକ୍ଷ ହୋଇଯାଏ ।

ବର୍ଣ୍ଣି ଘରେ କିଏ ସବୁ ଅଛନ୍ତି ?

ପ୍ରିୟଙ୍କା ମା' ଆଉ ମୁଁ...ହଜ୍‌ବେଣ୍ଡ ଦୁବାଇରେ ଚାକିରି କରନ୍ତି, ମଝିରେ ମଝିରେ ଆସନ୍ତି ।

ବର୍ଣ୍ଣି ଆପଣ କେବେ ଦୁବାଇ ଯାଇଛନ୍ତି ?

ପ୍ରିୟଙ୍କା ଯାଇନି ଏବେ ଯିବି ।

ବର୍ଣ୍ଣି (ଚିତ୍କାର କଲା) ଆଃ

ପ୍ରିୟଙ୍କା କ'ଣ ହେଲା ?

ବର୍ଣ୍ଣି ମୁଣ୍ଡ ବୁଲେଇଦେଲା ।

ପ୍ରିୟଙ୍କା ବ୍ଲଡ଼ପ୍ରେସର ଅଛି କି ?

ବର୍ଣ୍ଣି ନା ତ ।

ପ୍ରିୟଙ୍କ ନିଅନ୍ତୁ, ପାଣି ଢୋକେ ପିଅନ୍ତୁ, ଆଖିବୁଜି ଚପ୍‌ଚାପ୍ ବସି ଯାଆନ୍ତୁ ସବୁ ଠିକ୍ ହୋଇଯିବ ।(ବର୍ଣ୍ଣି ପାଣି ପିଇ ଶୋଇପଡ଼ିଲା, ପ୍ରିୟଙ୍କା ତା' ହାତରୁ ଘଡ଼ି, ମୁଦି, ପକେଟ୍‌ରୁ ପର୍ସ ଆଦି ଖୋଲି ଟ୍ରଲି ବ୍ୟାଗ୍ ଧରି ଚାଲିଗଲା ।)

ଘୋଷଣା କୃପେୟା ଧ୍ୟାନ ଦେ । ଅନ୍‌ଜାନ୍ ବ୍ୟକ୍ତି ସେ ନା କୁଛ ଖାଏ ନା କୁଛ ପିଏ । ଅନ୍‌ଜାନ୍ ଅର୍ ଲାୱାରିସ୍ ଚିଜ୍ ପରି ହାତ ନା ଲଗାୟେଁ । ତୁରନ୍ତ ପୋଲିସକୁ ଏତଲା କରେ ଔର ୧୦୦ପର ଡାଏଲ୍ କରେ । ଅପନା ସୁରକ୍ଷା ଅପନେ ହାତ...ବି ସ୍ମାଟ ଆଣ୍ଡ ବି ଆଟେଣ୍ଟିଭ୍ ...

ପୋଲିସ୍ (ପ୍ରବେଶ) ଏ ଟୋକା ଏମିତି କାହିଁକି ବସିଛୁ । (ଯାଇ ଦେଖୁଛି) । ଆରେ ଇଏତ ପୁରା ବେହୋସ୍ ।(ଫୋନ୍ କରିଛି) ହ୍ୟାଲୋ ଏମାର୍ଜେନସି, ପ୍ଲାଟଫର୍ମ ନଂ ୧୨ । ଡଷ୍ଟବିନ୍ ନଂ ୧୫ । ମେଡ଼ିକାଲ ହେଲ୍‌ପ ଦରକାର । (ଫୋନ୍ କାଟିଲା ।) (ବିମଳକୁ) ଏମାନଙ୍କୁ ଯେତେ ସାବଧାନ କଲେ ଯେତେ ସଚେତନ କଲେ କ'ଣ ହେବ । ଯେଉଁ ଲଙ୍ଗଳାକୁ ସେଇ ଲଙ୍ଗଳା ।

ବିମଳ (ନିଜକୁ ନିଜେ) କହିଦେବି କି ସବୁକଥା...କାହାକୁ କହିବି ? ପୋଲିସ୍‌କୁ...ଏଇନେ ତ ଆଖି ଆଗରେ ଦେଖିଲି ଚୋର ପୋଲିସର ଖେଳ ... ନା ନା ମୁଁ ଯଦି ଫସିଯାଏ । ତା' ଅପେକ୍ଷା ନିରବ ସବ୍‌ସେ ଭଲା । (ଦେଖାଗଲା ଦୁଇଜଣ ମେଡ଼ିକାଲ ଲୋକ ଆସି ବଣ୍ଟିକୁ ଷ୍ଟ୍ରେଚର୍‌ରେ ଉଠେଇ ନେଇଗଲେ ।)

ଘୋଷଣା କୃପେୟା ଧ୍ୟାନ ଦେ ନୟି ଦିଲ୍ଲୀ ସେ ଭୁବନେଶ୍ୱର ଜାନେ ବାଲି ନୀଳାଚଳ ଏକ୍‌ସ୍ପ୍ରେସ୍ ୧୨ ନଂ ପ୍ଲାଟଫର୍ମ ନିକଲନେକେ ଲିୟେ ତେୟାର ହେ । ଯାତ୍ରିଗଣ...

ପ୍ରସାଦ (ପ୍ରବେଶ) ଗିଭ୍ ମି ଏ ଟେନ୍ ରୁପିଜ୍ ପ୍ଲିଜ୍ ।

ସୁଧାଂଶୁ (ପ୍ରବେଶି) ମଉସା ନମସ୍କାର ।

ପ୍ରସାଦ ତୁ କିଏ ?

ସୁଧାଂଶୁ ଆପଣଙ୍କ ସାନପୁଅର ସାଙ୍ଗ ସୁଧାଂଶୁ । ଆଜି ଗାଁକୁ ଯାଉଛି । ଆପଣ କେମିତି ଅଛନ୍ତି । ଭାଇମାନେ କେମିତି ଅଛନ୍ତି ।

ପ୍ରସାଦ ସେମାନଙ୍କ କଥା କହନା । ବାହାସାହା ହୋଇ ସେମାନେ ଅଲଗା ରହୁଛନ୍ତି । ବଡ଼ଟା ହୀରା ବ୍ୟବସାୟ କରୁଛି । ମଝିଆଟା ଓଡ଼ିଶାରେ ମାଇନ୍‌ସ କିଣିଛି । ସାନଟା ଖାଲି ଚାକିରି କରିଛି । ତାକୁ ବୁଝେଇଲି ତୁ ଚାକିରି ଛାଡ଼ି ପଳେଇଆ । ମୋ ବ୍ୟବସାୟ ବୁଝିବୁ । ବର୍ଷ କେଇଟାରେ କୋଟିପତି ବନେଇଦେବି । ହେଲେ ସେ ଶୁଣୁନି । ଆରେ ଘଷି ଗୋଟେଇବା ଲୋକକୁ ପଇସା ଗୋଟେଇବାକୁ ଭଲ ଲାଗିବ କେମିତି ?

ସୁଧାଂଶୁ ମଉସା ଇଏ କିଏ କି ? ଇଏତ ଆମ ମାଉସୀ ନୁହେଁ ।

ପ୍ରସାଦ ତୋର ତିନି ନଂ ମାଉସୀ । ସେ ମୋ କଥା ବୁଝାବୁଝି କରୁଛି । ଆମେ ଦୁହେଁ ଏକାଠି ରହୁଛୁ ।

ସୁଧାଂଶୁ ଯାହା ହେଉ ଏ ବୟସରେ ଆପଣ ବି ଲିଭ୍ ଇନ୍ ରିଲେସନ୍‌ସିପ୍‌ରେ ରହିପାରୁଛନ୍ତି ।

ପ୍ରସାଦ ତୁ କ'ଣ ମୋତେ କ୍ରିଟିସାଇଜ୍ କରୁଛୁ ? ଗିଭ୍ ମି ଏ ଟେନ୍ ରୁପିଜ୍ ପ୍ଲିଜ୍ ।

ସୁଧାଂଶୁ ଆମର ଇଚ୍ଛା ଆପଣ ଏଣିକି ଏ କାମ ଛାଡ଼ି ଦିଅନ୍ତୁ ।

ପ୍ରସାଦ ୟୁ ସ୍କାଉଣ୍ଡ୍ରେଲ୍ ଦେଖିବୁ ମୋ ରୂପ ।(ପକେଟ୍‌ରେ ହାତ ପୁରେଇ ପିସ୍ତଲ ବାହାର କରିଛି । ଅନ୍ଧ ପିଲାସହ ଆଉ ଦୁଇ ଜଣ ଆସି ତାଙ୍କୁ ଇଞ୍ଜେକସନ୍ ଦେଇ ଟେକି ନେଇଯାଇଛନ୍ତି । ସ୍ତ୍ରୀ ଲୋକଟି କାନ୍ଦିଛି ।)

ଭାନୁଆ କାନ୍ଦୁଛ କାହିଁକି ? ଯେମିତି କର୍ମ ସେମିତି ଫଳ । ଯାହା କହିବା କଥା କୁହ । କାନ୍ଦିଲେ ଆଉ କିଛି ଲାଭ ନାହିଁ ।

ରଶ୍ମି (ଖନାଭଳି) କ'ଣ କହିବି, କାହାକୁ କହିବି, କିଏ ବିଶ୍ୱାସ କରିବ ମୋ କଥା । ମୁଁ କଥା କହିପାରିବିନି ବୋଲି ଏ ବୁଢ଼ା ମୋ ଜିଭ କାଟିଦେଇଛି । ଘରେ ମୋତେ ଏକା ଛାଡ଼ି ଆସିଲେ ଆଉ କାହା ସଙ୍ଗେ ପଳେଇଯିବି ବୋଲି ମୋତେ ସାଙ୍ଗରେ ଧରି ବୁଲୁଛି । ଏବେ ତାକୁ ନେଇଗଲ ମୁଁ ବଞ୍ଚିବି କେମିତି ? କିଏ ମୋ କଥା ବୁଝିବ ?

ଭାନୁଆ ଏବେ ତମେ ମୋ ହାତ ଧରି ଚାଲିବ । ଇନ୍ଦ୍ର ବଦଳିଗଲେ କ'ଣ ହେବ । ତମେ ତ ମହାରାଣୀ ସଜି ହୋଇ ରହିବ । ବସ୍ ଙ୍କ ସାମ୍ରାଜ୍ୟର ମହାରାଣୀ ଥିଲ, ଏବେ ମୋ ସାମ୍ରାଜ୍ୟର ମହାରାଣୀ ହୋଇ ଚଳିବ । ଆଉ ଏ ଅନ୍ଧ ଚଷମାର ଆବଶ୍ୟକତା ନାହିଁ (ଚଷମା ବାହାର କଲା) ଏହାକୁ ଡଷ୍ଟବିନ୍‌କୁ ପକାଯାଉ । (ବୁଢ଼ାର ବାଡ଼ିକୁ ଧରି) ଆଉ କୁହାଯାଉ ଲଙ୍ଗ୍ ଲିଭ୍ ପ୍ରଫେସନ୍ । ଲଙ୍ଗ୍ ଲିଭ୍ ଟ୍ରେଡିସନ୍ । ହେଲପ୍ ମି ଏ ଟେନ୍ ରୁପିଜ୍ ପ୍ଲିଜ୍ । (ସମସ୍ତେ ପ୍ରସ୍ଥାନ)

(ଭିତରୁ ଆସିଲେ ସଫେଇବାଲା କାନ୍ଧରେ ସଫେଇ ଥଳି)

ଡଷ୍ଟବିନ୍ ୟାକୁ ତ ଚିହ୍ନିଥିବେ ନିଶ୍ଚୟ ? ଖରା, ବର୍ଷା, ଶୀତ, କାକର ସବୁଦିନ ଆସେ ମୋ ପେଟ ସଫା କରି ଫେରିଯାଏ ।

ରାଜେଶ(ସଫେଇବାଲା) : ଗୀତ...

ଅତୀତକୁ ବୋହି ବୋହି ଚାଲୁଛି ପିଠିରେ ପାଦ ଥାପିଥାପି ଚାଲେ ଆଜିର ଛାତିରେ
ଭବିଷ୍ୟତ କାହିଁ ଦେଖାଯାଉ ନାହିଁ ଧାଉଁଛି ମୁଁ ଖାଲି ଅବା ଆଶାର ଆଶାରେ ।୦।
ସାଉଁଟି ନେଉଛି ନିତି କେତେ ପାପପୁଣ୍ୟ ଧୂଳିଖେଳ ହେଉ ଅବା କୈଶୋରର ପ୍ରେମ
ସ୍ମୃତି ଆଉ ବିସ୍ମୃତିର ଗର୍ଭରୁ ସାଉଁଟି ସୁଖଦୁଃଖ ଲୁହ ଆଉ ହସକୁ ଆଉଟି
ଧାଇଁଛି ମୁଁ ଖାଲି ଅବା ଆଶାର ଆଶାରେ ଛପି ଯାଇଛି ସେ କେଉଁ ଦିଗ୍‌ବଳୟ ଗାରରେ ।୧।

ପ୍ରତୀକ ହେ ସଫେଇବାଲା ଟିକେ ରହ ।

ରାଜେଶ କ'ଣ ହେଲା ?

ପ୍ରତୀକ ମୋ ଆଜି ଡିନର୍‌ଟା ପରା ତା' ଭିତରେ ଅଛି । (ଡଷ୍ଟବିନ୍ ଭିତରୁ ପ୍ୟାକେଟ୍‌ଟା ବାହାର କଲା)

ରାଜେଶ ତା' ଭିତରୁ ଗୋଟେଇ ଖାଉଛୁ ଘୃଣା ଲାଗୁନି ?

ପ୍ରତୀକ ତାକୁ ତୁ ଗୋଟେଇ ପିଠିରେ ନେଉଛୁ ତତେ ଘୃଣା ଲାଗୁନି ? ତୋ ନାକରେ ସିଙ୍ଗାଣି ଅଛି, ପେଟରେ ମଇଳା ଅଛି ଘୃଣା ଲାଗୁନି ? ଶୁଣ ଏଇ ଡଷ୍ଟବିନ୍ ଅଛି ବୋଲି ମୁଁ ବଞ୍ଚିଛି ନ ହେଲେ କେବେ ଠାରୁ ତୁମ୍ଭେମାନେ ମୋ ନାଁ ଟା ଅନାହାର ମୃତ୍ୟୁ ତାଲିକାରେ ଲେଖିସାରନ୍ତଣି । ସଲାମ୍ ଡଷ୍ଟବିନ୍ । ହେଟସ୍ ଅପ୍ ଟୁ ୟୁ । (କୁକୁରକୁ) ଚାଲରେ ଭୋଳା ଡିନର ଖାଇବା ଚାଲ୍ ।

ରାଜେଶ ଇଏ ପାଗଳ କି ମୁଁ ପାଗଳ ବୁଝି ପାରୁନି । ଛାଡ଼ରେ ଭାଇ ! ଅପନା ହାତ ଜଗନ୍ନାଥ । ଅପନା କାମ ମେହେରବାନ୍ । (ପୁଣି ସେଇ ପୂର୍ବ ଗୀତ ଗାଇବା ଆରମ୍ଭ କଲା, ଟ୍ରେନ୍ ସାଉଣ୍ଡ ଭିତରେ କୋଳାହଳ କରି ଲୋକମାନେ ପଶିଲେ ।)

ଡଷ୍ଟବିନ୍ ଏ ଭାଇ ସଫେଇବାଲା । ତୁମକୁ ଅଶେଷ ଧନ୍ୟବାଦ । ତୁମେ ମୋତେ ନିତି ସଫା କରୁଛ । ମୋତେ ଆନନ୍ଦ ଆଉ ଶାନ୍ତି ଦେଉଛ । ହେଲେ ଭାଇ ଗୋଟିଏ କଥା କହିବି, ଯଦି କରିପାରିବ ତୁମକୁ ଗୁରୁ ବୋଲି ମାନିବି ।

ରାଜେଶ କହୁନ କୁହ ।

ଡଷ୍ଟବିନ୍ ମଞ୍ଚରେ ଥିବା ଲୋକମାନଙ୍କୁ ଚାହିଁ । ମୋ ଭଳି ଏମାନଙ୍କ ଭିତରଟା ଟିକେ ସଫା କରିଦିଅନ୍ତ ନାହିଁ ? ଏମାନଙ୍କ ଭିତରେ ଭାରି ଅଳିଆ । ତାଙ୍କ ଭିତରଟା ପରିଷ୍କାର କରିଦେଲେ ସେମାନେ ଶାନ୍ତି ବି ପାଆନ୍ତେ ଆନନ୍ଦ ବି ପାଆନ୍ତେ । ଆଉ ଏ ସଂସାରଟା ହସି ଉଠନ୍ତା ।

ରାଜେଶ ସଫେଇ କରିବା ତ ମୋର କାମ । ମୁଁ ଆପତ୍ତି କରିବି କାହିଁକି ? ହେଲେ ଏମାନଙ୍କୁ ପଚାରି ବୁଝ, ଏମାନେ ନିଜେ ସଫେଇ ହେବାକୁ ରାଜି ତ ?

ଡଷ୍ଟବିନ୍ କ'ଣ ଭାଇମାନେ ରାଜି ତ ? (ଦୀର୍ଘ ନୀରବତା ଭିତରେ ଜଣେ ଜଣେ କରି ମଞ୍ଚରୁ ସମସ୍ତେ ଚାଲିଗଲେ ସଫେଇବାଲା ଗୀତ ଗାଇଗାଇ ଚାଲିଗଲା । ଦର୍ଶକ ଆଡ଼କୁ ଆଙ୍ଗୁଳି ଦେଖାଇ ପ୍ରଶ୍ନ କଲା ଡଷ୍ଟବିନ୍ ।) ଆଉ ଆପଣମାନେ ... ? (ଦେଖାଗଲା ଅନେକ ପ୍ରଶ୍ନ ଚିହ୍ନ ହାତରେ ଧରି ଚାରିଆଡୁ ମଞ୍ଚକୁ ପ୍ରବେଶ କଲେ ବିଭିନ୍ନ ଚରିତ୍ର ସବୁ ।)

(ଅନ୍ଧକାର)



**ନବୀନ କୁମାର ପରିଡ଼ା**

ଜନ୍ମ -୦୮-ମାର୍ଚ୍ଚ-୧୯୫୪, ପିତା: ୰ ହରିଶ୍ଚନ୍ଦ୍ର ପରିଡ଼ା, ମାତା: ୰ ବିଷ୍ଣୁପ୍ରିୟା ପରିଡ଼ା, ସ୍ଥାନ- ଜମାଳପୁର, ଜଳେଶ୍ୱର, ବାଲେଶ୍ୱର।

ଲେଖକ ବିଶ୍ୱନାଥ ଏକାଡ଼େମୀ ଜମାଳପୁରରୁ ମାଟ୍ରିକ ଶିକ୍ଷା ସମାପ୍ତ କରି ପରେ ରବୀନ୍ଦ୍ର ଭାରତୀ ବିଶ୍ୱବିଦ୍ୟାଳୟ, କଲିକତାରୁ ନାଟକରେ ସ୍ନାତୋକତ୍ତର ଡିଗ୍ରୀ ହାସଲ କରି ଉତ୍କଳ ସଂଗୀତ ମହାବିଦ୍ୟାଳୟର ନାଟକ ବିଭାଗରେ ୧୯୮୩ ମସିହାରେ ନାଟକ ବିଭାଗର ଅଧ୍ୟାପକ ଭାବେ ଯୋଗଦାନ କରି ସଫଳତାର ସହିତ ନାଟ୍ୟକଳାରେ ଅଧ୍ୟାପନା ଦାୟିତ୍ୱ ନିର୍ବାହ କରି ପରେ ନାଟକ ବିଭାଗର ମୁଖ୍ୟ ଭାବେ ଓ ଉତ୍କଳ ସଂଗୀତ ମହାବିଦ୍ୟାଳୟର ଅଧକ୍ଷ ଭାବେ କାର୍ଯ୍ୟକରି ୨୦୧୨ ରେ ଅବସର ଗ୍ରହଣ କରିଛନ୍ତି। ନାଟ୍ୟରଚନା ବ୍ୟତୀତ, ନାଟ୍ୟପୁସ୍ତକ ରଚନା, ନିର୍ଦ୍ଦେଶନା, ଅଭିନୟ ଏବଂ ନାଟ୍ୟକର୍ମଶାଳା ଆୟୋଜନ କରିବାରେ ସେ ସିଦ୍ଧହସ୍ତ। ତାଙ୍କର ଅଦ୍ୟାବଧି ଲିଖିତ ପୁସ୍ତକ ଗୁଡ଼ିକ ହେଲା-୧- ନାଟ୍ୟ କଥା, ୨- ମଞ୍ଚସଜ୍ଜା ଓ ଆଲୋକ ବିନ୍ୟାସ , ୩- ବିଦ୍ୟାଳୟ ନାଟ୍ୟଶିକ୍ଷା ଓ ନାଟ୍ୟତ୍ରୟୀ ୪- ନାଟୁଆ ଓ ଅନ୍ୟାନ୍ୟ ନାଟକ, ୫- ଅନ୍ଧପୁତୁଳିର ଖେଳ ଓ ଅନ୍ୟାନ୍ୟ ନାଟକ। ୬- କଲେ ଯେତେ ହୁନ୍ଦର ଓ ଅନ୍ୟାନ ନାଟକ, ୭- ଡଷ୍ଟବିନ୍ ଓ ଅନ୍ୟାନ ନାଟକ।

**ପ୍ରକାଶ ଅପେକ୍ଷାରେ** - ଅଭିନେତା ଓ ଅଭିନୟ

**ଯୋଗାଯୋଗ ଠିକଣା** : ବି- ୬/୧୦, ଇନ୍ଦିରାଗାନ୍ଧୀ ହାଉସିଂ କଲୋନି
ପୋ: ଶିଶୁପାଳ ଗଡ଼, ଭୁବନେଶ୍ୱର - ୭୫୧୦୦୨
ଟେଲିଫୋନ୍ - ୯୪୩୭୪୬୮୭୮୦
ଇ-ମେଲ୍ : nabinparida78@gmail.com

₹ 180 /-